# କବିତା-କୌମୁଦୀ

ସମ୍ପାଦକ

ଶ୍ରୀ ସୂର୍ଯ୍ୟନାରାୟଣ ଦାଶ ବି. ଏ.

ପ୍ରଥମ ସଂସ୍କରଣ

ପ୍ରକାଶକ

ଶ୍ରୀ ସୂର୍ଯ୍ୟନାରାୟଣ ଦାଶ

ହିନ୍ଦୁସ୍ଥାନ ସାହିତ୍ୟ ମନ୍ଦିର

କଟକ

୧୯୩୭

 ... ୦ ୫ ମାତ୍ର

## ମୁଖବନ୍ଧ

ଅନେକ ଦିନ ତଳୁ ଓଡ଼ିଆ ଛାନ୍ଦ ଗ୍ରନ୍ଥମାନଙ୍କରୁ କେତେକ ଛାନ୍ଦ ଚୟନ କରି ପୁସ୍ତକ ଆକାରରେ ପ୍ରକାଶ କରିବାର ଇଚ୍ଛା ଥିଲା । ଏହି କେତେ ବର୍ଷ ହେଲା ଓଡ଼ିଶାର ବିଭିନ୍ନ ଅଞ୍ଚଳ ଭ୍ରମଣ କରି ଅନେକ ଅପ୍ରକାଶିତ ଗ୍ରନ୍ଥ ସଂଗ୍ରହ କରିଛି । ପ୍ରାୟ ଶତାଧିକ ଗ୍ରନ୍ଥ ଅପ୍ରକାଶିତ ଏବଂ ବର୍ତ୍ତମାନ ମୋ ପାଖରେ ରହିଛି । ଉପେନ୍ଦ୍ର ଭଞ୍ଜଙ୍କ ସମକକ୍ଷ କବିମାନଙ୍କର କୃତି ମଧ୍ୟ ମୁଁ ପାଇଛି । ତାହାର ଦୁଷ୍ପ୍ରାପ୍ୟକୁ [illegible] ଉଦ୍ଧାର ନ ହୁଏ । କେବେ ସେ ଦିନ ଆସିବ [illegible] କହି ପାରୁ ନାହିଁ ।

ଓଡ଼ିଆ ସାହିତ୍ୟରେ [illegible] ଯେ ଲୋକଙ୍କ ଭିତରେ ଖୁବ୍ ଆଦର [illegible] ସେଥିରେ [illegible] ସନ୍ଦେହ ନାହିଁ । ଏହି ଆଦୃତ ହେଉଥିବା କାବ୍ୟମାନଙ୍କ ମଧ୍ୟରେ [illegible] ଆଦିରସପ୍ରାଣ । ଯୁଗର ଅବସ୍ଥାକୁ ଚାହିଁ ସେପରି କାବ୍ୟସବୁ ରଚିତ ହୋଇଥିଲା । ବର୍ତ୍ତମାନ ଯୁଗରେ ଉତ୍କଟ ଆଦିରସବ୍ୟଞ୍ଜକ କବିତାକୁ ଲୋକେ ସେତେ ଭଲ ପାଉ ନାହାନ୍ତି । ସେଥିପାଇଁ ଲୋକେ ଦୋଷୀ ନୁହନ୍ତି । ଏହି ଆଦିରସ-ସର୍ବସ୍ୱ ଯୋଗୁଁ ଅନେକ ଲୋକ ପ୍ରାଚୀନ କାବ୍ୟ ପଢ଼ିବା ପାଇଁ ମନ ବଳାଉ ନାହାନ୍ତି । ଆଦିରସ ଛାଡ଼ିଦେଲେ ମଧ୍ୟ ପ୍ରାଚୀନ କାବ୍ୟମାନଙ୍କରେ ଯେ ଅନେକ ସୁନ୍ଦର ଜିନିଷ ରହିଛି, ତାହା ଲୋକେ ଜାଣି ପାରୁ ନାହାନ୍ତି । ସାହିତ୍ୟର ଉନ୍ନତିପଥରେ ଏହା କମ ଅନ୍ତରାୟ ନୁହେଁ ।

ଆଦିରସ ଭାବ ଖୁବ୍ କମ୍ ଅଛି ଅଥଚ କବିତାର ମାଧୁର୍ଯ୍ୟ ଖୁବ୍ ବେଶି ଅଛି, ଏପରି କେତେକ ଛାନ୍ଦ ସଂଗୃହୀତ ହୋଇ ଏହି ପୁସ୍ତକରେ ସନ୍ନିବେଶିତ କରାଯାଇଛି । ଯେଉଁଠାରେ ଆଦିରସର ଉତ୍କଟ ପ୍ରକାଶର

ଆଭାସ ମିଳୁଛି, ସେହି ପଦଗୁଡ଼ିକୁ ବାଦ୍ ଦିଆଯାଇଅଛି । ଏଥିପାଇଁ ଖୁବ୍ ସତର୍କତା ସହିତ କରାଯାଇଛି । କବିତାର ପ୍ରବାହ ଯେପରି ବ୍ୟାହତ ହେବ ନାହିଁ ଏବଂ ଭାବ ଯେପରି ଅକ୍ଷୁର୍ଣ୍ଣ ରହିବ, ସେଥିପ୍ରତି ମଧ୍ୟ ବିଶେଷ ଦୃଷ୍ଟି ଦିଆ ଯାଇଛି ।

ଯେଉଁ କବିମାନଙ୍କ ଗ୍ରନ୍ଥର ସ୍ଥଳ ଉଦ୍ଧୃତ କରା ଯାଇଛି, ସେଗୁଡ଼ିକୁ ସର୍ବୋତ୍କୃଷ୍ଟ ବୋଲି ଭାବିବାକୁ ହେବ ନାହିଁ । କେଉଁଟି ଉତ୍କୃଷ୍ଟ, କେଉଁଟି ଉତ୍କୃଷ୍ଟ ନୁହେଁ, ଏ ସମ୍ବନ୍ଧରେ ଭିନ୍ନ ଭିନ୍ନ ଲୋକଙ୍କର ଭିନ୍ନ ଭିନ୍ନ ମତ । ଅଧିକନ୍ତୁ ମଧ୍ୟ ଜଣେ କବିର କାବ୍ୟରେ ଏକାଧିକ ଭଲ ସ୍ଥଳ ଥାଇପାରେ । ସେ ସବୁ ଉଦ୍ଧାର କରିବାପାଇଁ ସ୍ଥାନର ଯଥେଷ୍ଟ ଅଭାବ । ଯେତେ କାବ୍ୟ ଅପ୍ରକାଶିତ ରହିଛି, ସେଥିରୁ ଗୋଟିଏ ଗୋଟିଏ ମାତ୍ର ସ୍ଥଳ ଉଦ୍ଧାର କଲେ ଏହି ପୁସ୍ତକ ପରି ଶହେ ଖଣ୍ଡ ପୁସ୍ତକ ହେଲେ ମଧ୍ୟ କଅଣ ଚଳିବ । କେବଳ ସ୍ଥାନାଭାବ ଯୋଗୁଁ କେତେକ ସ୍ଥଳ ପୂରା ଭାବରେ ଦିଆଯାଇ ପାରି ନାହିଁ । ପ୍ରତ୍ୟେକ ସ୍ଥଳର ଭାବ ଯେପରି ପୂର୍ଣ୍ଣ ଭାବରେ ପ୍ରକାଶ ପାଇବ, ସେଥିପ୍ରତି ଦୃଷ୍ଟି ଦିଆଯାଇଛି । ଏ କ୍ଷୁଦ୍ର ପୁସ୍ତକଟିରେ ଯେଉଁ ସ୍ଥଳଗୁଡ଼ିକ ଦିଆଯାଇଛି, ତାହା ଦ୍ୱାରା ଓଡ଼ିଶାର ଜନ-ସାଧାରଣଙ୍କର ମନରେ ପ୍ରାଚୀନ ସାହିତ୍ୟରେ ଥିବା ଉଜ୍ଜ୍ୱଳ ରତ୍ନରାଜି ପ୍ରତି ଆଗ୍ରହ ଜନ୍ମିଲେ ଶ୍ରମ ସାର୍ଥକ ମଣିବ ।

ଯେଉଁ ଯେଉଁ କବିମାନଙ୍କ କାବ୍ୟରୁ ଅଂଶମାନ ଉଦ୍ଧୃତ କରାଯାଇଛି, ଏଠାରେ ସେମାନଙ୍କର ସଂକ୍ଷିପ୍ତ ପରିଚୟ ମାତ୍ର ଦିଆଗଲା । କେବଳ ବାହୁଲ୍ୟ ଭୟରେ ଓ ସ୍ଥାନର ଅଳ୍ପତା ହେତୁ ବାଧ୍ୟ ହୋଇ ଏପରି ସଂକ୍ଷିପ୍ତ କରା ଯାଇଅଛି ।

ହିନ୍ଦୁସ୍ଥାନ ସାହିତ୍ୟ ମନ୍ଦିର
କଟକ
} ସୂର୍ଯ୍ୟନାରାୟଣ ଦାଶ

# କବିମାନଙ୍କର ସଂକ୍ଷିପ୍ତ ପରିଚୟ

**ସାରଳା ଦାସ—**

ମହାକବି ସାରଳାଦାସ ସୂର୍ଯ୍ୟବଂଶର ରାଜା କପିଳେନ୍ଦ୍ର ଦେବଙ୍କ ରାଜତ୍ୱ ସମୟରେ ମହାଭାରତ ରଚନା କରିଥିଲେ । ତାଙ୍କ ପୂର୍ବରୁ କୌଣସି କବି ମହାଭାରତ ପରି ଏତେ ବଡ଼ କାବ୍ୟ ରଚନା କରିଥିବାର ଜଣା ପଡ଼ି ନାହିଁ । ବେଦବ୍ୟାସଙ୍କ କୃତ ସଂସ୍କୃତ ମହାଭାରତର ମୂଳ ବିଷୟକୁ ଅବଲମ୍ବନ କରି ସାରଳା ଦାସ ଏହି ଗ୍ରନ୍ଥଟିକୁ ରଚନା କରିଥିଲେ ମଧ୍ୟ ଅନୁକରଣ ଓ ଅବଲମ୍ବନ ଅପେକ୍ଷା ସ୍ୱାଧୀନତା ତାଙ୍କ ଲେଖାରେ ବିଶେଷ ଭାବରେ ପରିସ୍ଫୁଟ ହୋଇଥିବାର ଦେଖାଯାଏ । ସାରଳା ଦାସଙ୍କ ମହାଭାରତଟି ମନେହେଲେ ଗୋଟିଏ ନୂତନ ଗ୍ରନ୍ଥ ପଢ଼ିଲାପରି ବୋଧହୁଏ । ମହାଭାରତଟି ସାରଳା ଦାସଙ୍କ ନିଜସ୍ୱ । ଏଥିରେ ବର୍ଣ୍ଣିତ ହୋଇଥିବା ଅଧିକାଂଶ ଘଟଣା, ଅଧିକାଂଶ ଚରିତ୍ର, ଉପପାଦ୍ୟ ବିଷୟର ଆରମ୍ଭ, କ୍ରମ ବିକାଶ ଓ ପରିଣତି, ସାରଳା ଦାସଙ୍କର ନିଜସ୍ୱ ସମ୍ପତ୍ତି । କେତେକ ସ୍ଥାନରେ ମୂଳ ମହାଭାରତ ଅପେକ୍ଷା ସାରଳା ଦାସଙ୍କ ମହାଭାରତ ସୁନ୍ଦର ହୋଇଛି ଏବଂ କେତେକ ସ୍ଥାନରେ ଅଶୋଭନୀୟ ହୋଇଛି ମଧ୍ୟ । କବି ଗ୍ରନ୍ଥ ବିଷୟର ପରିସ୍ଥିତି ଓ ବାୟୁମଣ୍ଡଳକୁ ମୁଖ୍ୟ ଭାବରେ "ଓଡ଼ିଆ" କରିବାକୁ ଛାଡ଼ି ନାହାନ୍ତି । ଓଡ଼ିଶାର ସଂସ୍କୃତି, ଓଡ଼ିଶାର ସାମାଜିକ, ରାଜନୈତିକ, ମାନସିକ, ଆଧ୍ୟାତ୍ମିକ ଅବସ୍ଥା କାବ୍ୟଟିରେ ଖୁବ ସୁନ୍ଦର ଭାବରେ ବର୍ଣ୍ଣିତ ହୋଇଛି । ଜୀବନର ପ୍ରତ୍ୟେକ ରସର ବର୍ଣ୍ଣନା ମହାଭାରତରେ ଶୋଭନଭାବରେ ଫୁଟିଉଠିଛି । ଅନେକଙ୍କ ମତରେ ଯୁଦ୍ଧ ସମ୍ବନ୍ଧୀୟ ବର୍ଣ୍ଣନାରେ ସାରଳା ଦାସ ସିଦ୍ଧହସ୍ତ । ସେହିହେତୁ 'କବିତାକୌମୁଦୀ'ରେ ଏହି ବର୍ଣ୍ଣନାର ଗୋଟିଏ ନମୁନା ଉଦ୍ଧୃତ କରାଗଲା । ସାରଳାଦାସ କଟକ ଜିଲ୍ଲା ଝଙ୍କଡ଼ ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ପୂର୍ବନାମ ସିଦ୍ଧେଶ୍ୱର ପରିଡ଼ା;

ଜାତରେ ଶୂଦ୍ର । ସାରଳାଦେବୀଙ୍କ ବର ପ୍ରସାଦରୁ ସେ ଏହି କାବ୍ୟ ଲେଖିଥିବାର କିମ୍ବଦନ୍ତୀ ଜଣାଯାଇଛନ୍ତି । ମହାଭାରତ ଛଡ଼ା ଚଣ୍ଡୀପୁରାଣ, ବିଲଙ୍କା ରାମାୟଣ ମଧ୍ୟ ତାଙ୍କର ରଚନା । ତାଙ୍କର ଭାଷା ଏତେ ସରଳ ଓ ଲେଖା ଏତେ ହୃଦୟଗ୍ରାହୀ ଯେ, ଓଡ଼ିଶାର ପ୍ରତ୍ୟେକ ଗୃହରେ ଏହାର ଆଦର ରହିଛି । ଭାରତର ଅନ୍ୟାନ୍ୟ ପ୍ରଦେଶ-ମାନଙ୍କରେ ପଞ୍ଚଦଶ ଶତାବ୍ଦୀ ସୁଦ୍ଧା ଓଡ଼ିଆ ମହାଭାରତ ପରି ଏତେ ବଡ଼ ଆକାରର ଗ୍ରନ୍ଥ ଲିଖିତ ହୋଇଥିବାର ଖୁବ୍ ଅଳ୍ପ ଦେଖାଯାଏ ।

**ବଳରାମ ଦାସ—**

ପ୍ରତାପରୁଦ୍ରଙ୍କ ସମୟର ବଳରାମ ଚୈତନ୍ୟଦେବଙ୍କ ପଞ୍ଚସଖା ମଧ୍ୟରୁ ଜଣେ । ସେ ବୈଷ୍ଣବ ଗ୍ରନ୍ଥମାନଙ୍କରେ ସାଧାରଣତଃ ମତ୍ତ ବଳରାମ ଦାସ ବୋଲି ପରିଚିତ । ସେ ଶୂଦ୍ର କୁଳରେ ଜନ୍ମଗ୍ରହଣ କରିଥିଲେ । ଉକ୍ତ ବଳରାମ ଯେଉଁ ଅମୂଲ୍ୟ ରତ୍ନରାଜି ଉତ୍କଳ ଦେଶକୁ ଦାନ କରି ଯାଇଛନ୍ତି, ଧରାପୃଷ୍ଠରେ ଉତ୍କଳର ନାମ ରହିଥିବା ପର୍ଯ୍ୟନ୍ତ ତାହା ଅକ୍ଷୁଣ୍ଣ ଭାବରେ ବିରାଜିଥିବ । ସରଳ ଭାଷାରେ ଜଟିଳ ସମସ୍ୟାର ବିଶ୍ଳେଷଣ ବଳରାମଙ୍କ ବୈଶିଷ୍ଟ୍ୟ । ବଳରାମ ରାମାୟଣ ଲେଖି ଅମରତ୍ୱ ଲାଭ କରିଅଛନ୍ତି । ଏହି ମହାତ୍ମାଙ୍କ ରଚନାବଳୀ ମଧ୍ୟରୁ "ଜଗମୋହନ ରାମାୟଣ" ଉତ୍କୃଷ୍ଟ ଓ ଓଡ଼ିଶାର ପ୍ରତ୍ୟେକ ଗୃହରେ ନିତ୍ୟ ପଠିତ ହେଉଅଛି । ବର୍ଣ୍ଣନା ଚାତୁରୀର ଉଦାହରଣ ଦେଖାଇବା ନିମିତ୍ତ "ଅଗ୍ନିପରୀକ୍ଷା" ଉଦ୍ଧୃତ ହେଲା ।

**ଜଗନ୍ନାଥ ଦାସ—**

ଜଗନ୍ନାଥ ଦାସ ଷୋଡ଼ଶ ଶତାବ୍ଦୀର କବି—ବଳରାମଙ୍କ ସମସାମୟିକ ଓ ଚୈତନ୍ୟ ଦେବଙ୍କ ପଞ୍ଚସଖାରୁ ଜଣେ । ସେ ଜାତରେ ବ୍ରାହ୍ମଣ, "ଅତି ବଡ଼" ସମ୍ପ୍ରଦାୟର ପ୍ରତିଷ୍ଠାତା । ଏହି ମହାପୁରୁଷଙ୍କ ଭାଗବତ ଗ୍ରନ୍ଥ ଓଡ଼ିଆ ସାହିତ୍ୟର ଗୋଟିଏ ଉଜ୍ଜ୍ୱଳ

ବହୁ । ଓଡ଼ିଶାରେ ଏପରି ଘର ନାହିଁ, ଯେଉଁଠାରେ କି ଜଗନ୍ନାଥ ଦାସଙ୍କ ଭାଗବତ ପାଠ ନ ହେଉଛି । ଓଡ଼ିଶାର ଅଧିକାଂଶ ଲୋକେ ଏହି ଭାଗବତକୁ ବେଦ ଅପେକ୍ଷା ମଧ୍ୟ ବଳି ମନେ କରିଥାନ୍ତି । ମୂଳ ସଂସ୍କୃତ ଭାଗବତର ଏହା ଅନୁବାଦ ନୁହେଁ । କବି ନିଜେ ଅନେକ ସ୍ୱତନ୍ତ୍ର ବିଷୟ ଲେଖି ଯାଇଛନ୍ତି । ତାଙ୍କର ଭାଷା ଅତି ସରଳ ହୋଇଥିବା ଯୋଗୁଁ ଲୋକେ ଖୁବ୍ ଆଗ୍ରହ ସହିତ ଏହି ଗ୍ରନ୍ଥଟିକୁ ପଢ଼ିଥାନ୍ତି । ଭାରତର ଅନ୍ୟାନ୍ୟ ପ୍ରାଦେଶିକ ଭାଷାମାନଙ୍କରେ ମଧ୍ୟ ଏପରି ଲୋକପ୍ରିୟ ଗ୍ରନ୍ଥ ଖୁବ କମ ଅଛି । ଭକ୍ତକବିଙ୍କ ଲେଖାରେ କି ପ୍ରାଣ ରହିଅଛି, ତାର ପରିଚୟ ଦେବାପାଇଁ "ବିଳାପ"ଟି ଦିଆଗଲା ।

## ଧନଞ୍ଜୟ ଭଞ୍ଜ—

ଧନଞ୍ଜୟ ଭଞ୍ଜ ଉପେନ୍ଦ୍ର ଭଞ୍ଜଙ୍କର ପିତାମହ—ସପ୍ତଦଶ ଶତାବ୍ଦୀରେ ଘୁମୁସରରେ ରାଜତ୍ୱ କରୁଥିଲେ । ତାଙ୍କର "ତ୍ରିପୁରସୁନ୍ଦରୀ" ଗୋଟିଏ ଉତ୍କୃଷ୍ଟ କାବ୍ୟ । ତାଙ୍କର ଭାଷା ସଂସ୍କୃତବହୁଳ, ତା ସତ୍ତ୍ୱେ କାବ୍ୟର ଉତ୍କର୍ଷ ଯଥେଷ୍ଟ ଅଛି । କେତେକଙ୍କ ମତରେ ସେ ଭଞ୍ଜ ଯୁଗର ସୂତ୍ରପାତ କରିଛନ୍ତି । ଯେଉଁମାନେ ଶବ୍ଦାଳଙ୍କାରପ୍ରିୟ, ସେମାନେ ମଧ୍ୟ କିପରି ସରଳ ଭାଷାରେ ସୁନ୍ଦର କବିତା ଲେଖିପାରନ୍ତି, ତାର ଉଦାହରଣ ଦେଖାଇବାପାଇଁ ଗୀତଟି ଉଦ୍ଧୃତ କରାଗଲା । ତାଙ୍କର "ରଘୁନାଥବିଳାସ" କାବ୍ୟଟି ମଧ୍ୟ ଉଚ୍ଚ ଧରଣର । ଦୁଇଟିଯାକ କାବ୍ୟ ଅପ୍ରକାଶିତ ରହିଅଛି ।

## ଲୋକନାଥ ବିଦ୍ୟାଧର—

କବି ଲୋକନାଥ ବିଦ୍ୟାଧର ଆଜିପର୍ଯ୍ୟନ୍ତ ବହୁତ ମାଲିକା ଦଶାକୁ ଭଜି ରହିଅଛନ୍ତି । ଲୋକନାଥ ଉପେନ୍ଦ୍ରଭଞ୍ଜଙ୍କ ସମକକ୍ଷ କବି । ସେ ପୁରୀ ଜିଲ୍ଲାର ପ୍ରସିଦ୍ଧ ବର୍କ୍ଷଣରେ ସପ୍ତଦଶ ଶତାବ୍ଦୀର ଶେଷଭାଗରେ ଜନ୍ମଗ୍ରହଣ କରିଥିଲେ । କବିଙ୍କର ଅନେକ ଗ୍ରନ୍ଥ ଆଜିଯାଏ ଅପ୍ରକାଶିତ ଅବସ୍ଥାରେ ରହିଛି । "ସର୍ବାଙ୍ଗ-

ପରିଣୟ" ମଧ୍ୟ ପ୍ରକାଶିତ ହୋଇ ନାହିଁ । ଏହା ଗୋଟିଏ ଔପନ୍ୟାସିକ କାବ୍ୟ—୧୮ ଛାନ୍ଦରେ ସଂପୂର୍ଣ୍ଣ । ଚନ୍ଦ୍ରାବତୀପୁରର ରାଜା ଧର୍ମଧ୍ୱଜଙ୍କ କନ୍ୟା ପଦ୍ମାବତୀଙ୍କର ଚନ୍ଦ୍ରପ୍ରଭାପୁର ରାଜକୁମାର ମକରଧ୍ୱଜଙ୍କ ସହିତ ପରିଣୟ ଏହାର ବର୍ଣ୍ଣିତ ବିଷୟ । ଲୋକନାଥଙ୍କ ଅଧିକାଂଶ କାବ୍ୟ ଔପନ୍ୟାସିକ ଓ ଘଟଣାଳୀ ବନ୍ଧରେ ରଚିତ । ବିବିଧ ରସର ମଧୁର ସମାବେଶ ତାଙ୍କର ରଚନାରେ ଦେଖିବାକୁ ମିଳେ । ତାଙ୍କର ଭାଷା ତେତେ ସରଳ ନୁହେଁ । ତେବେ ଲେଖାର ଢଙ୍ଗ ଖୁବ୍ ଉଚ୍ଚଧରଣର । ଉଦ୍ଧୃତ କବିତାଟିରେ ତାଙ୍କର ବଳିଷ୍ଠ କବି ପ୍ରତିଭାର ଯଥେଷ୍ଟ ପରିଚୟ ମିଳିବ ।

ଉପେନ୍ଦ୍ର ଭଞ୍ଜ—

ଉପେନ୍ଦ୍ରଭଞ୍ଜ ଓଡ଼ିଶାର ଶ୍ରେଷ୍ଠ କବି । ତାଙ୍କପରି ପ୍ରତିଭାବାନ୍ କବି ଅନ୍ୟାନ୍ୟ ପ୍ରଦେଶମାନଙ୍କରେ ମଧ୍ୟ ଖୁବ୍ କମ୍ ଅଛନ୍ତି । ସାହିତ୍ୟର ଯେଉଁ ଯେଉଁ ଅଙ୍ଗ ସେ ଗଠନ କରିବାକୁ ଯାଇଛନ୍ତି, ସେଗୁଡ଼ିକ ଅତି ରମଣୀୟ ନ କରି ଛାଡ଼ି ନାହାନ୍ତି । ତାଙ୍କର କାବ୍ୟମାନଙ୍କରେ ସବୁ ରସର, ସବୁ ଅଳଙ୍କାରର ସମାବେଶ ଦେଖାଯାଏ । ସେ ଯେପରି କଷ୍ଟପଦବହୁଳ ଦୁର୍ବୋଧ କବିତା ଲେଖିପାରନ୍ତି, ସେହିପରି ସହଜ ସରଳ ମର୍ମସ୍ପର୍ଶୀ ଭାଷାରେ ମଧ୍ୟ ଉତ୍କୃଷ୍ଟ କାବ୍ୟ ଲେଖିପାରନ୍ତି । ସମୟର ରୁଚିର ବଶବର୍ତ୍ତୀ ହୋଇ ସେ ଆଦିରସକୁ ପ୍ରଧାନ କରି ଅନେକ କାବ୍ୟ ଲେଖିଛନ୍ତି; ଅନେକ ସ୍ଥଳରେ ମଧ୍ୟ ଆଦିରସର ଉତ୍କଟ ପ୍ରକାଶ କାବ୍ୟକୁ ଦୂଷିତ କରିଦେଇଛି । ଏହା ସତ୍ତ୍ୱେ ତାଙ୍କ ଲେଖାରେ ପ୍ରତିଫଳିତ ହୋଇଥିବା ପ୍ରତିଭା ଅନନ୍ୟସାଧାରଣ । ଉତ୍କଟ ଆଦିରସ-ଦୂଷିତ ଅଂଶଗୁଡ଼ିକ ଛାଡ଼ିଦେଲେ ମଧ୍ୟ ତାଙ୍କର କାବ୍ୟମାନଙ୍କରେ ଯେ ବହୁତ ପଢ଼ିବାର ଜିନିଷ ଅଛି, ଆନନ୍ଦଲାଭ କରିବାପାଇଁ ବହୁତ ଉପାଦାନ ଅଛି, ତାହା ଉଦ୍ଧୃତ କବିତାଂଶଗୁଡ଼ିକରୁ ଉପଲବ୍ଧ ହେବ ।

ଉପେନ୍ଦ୍ର ଭଞ୍ଜ ଉତ୍କଳ ସାହିତ୍ୟ ରାଜ୍ୟର ସମ୍ରାଟ । ସେଥିପାଇଁ ତାଙ୍କର କାବ୍ୟରାଜ୍ୟରୁ ଏକାଧିକ କବିତା ଏହି ପୁସ୍ତକରେ ଦିଆଗଲା । ଉପେନ୍ଦ୍ର ଭଞ୍ଜ ୧୮ଶ ଶତାବ୍ଦୀରେ ଘୁମୁସର ବଂଶରେ ଜନ୍ମଗ୍ରହଣ କରିଥିଲେ । ରାମତାରକ ମନ୍ତ୍ର ଜପ କରି ତାଙ୍କର କବିତା ଲେଖିବା ଶକ୍ତି ଜାତ ହୋଇଥିଲା ବୋଲି କିମ୍ବଦନ୍ତୀ ରହିଛି ।

## ଦେବଦୁର୍ଲଭ ଦାସ—

ଦେବଦୁର୍ଲଭଙ୍କ ଜୀବନୀ ସମ୍ବନ୍ଧରେ ଅଧିକ କିଛି ଜଣାଯାଇ ନାହିଁ । ତାଙ୍କର "ରହସ୍ୟମଞ୍ଜରୀ" ଖୁବ୍ ଉତ୍କୃଷ୍ଟ ଧରଣର କାବ୍ୟ । ଦେବଦୁର୍ଲଭଙ୍କ ଭାଷାରେ ଖୁବ୍ ଲାଳିତ୍ୟ ରହିଛି । ଉଦ୍ଧୃତ କବିତାଟି ତାହାର ଜ୍ୱଳନ୍ତ ଦୃଷ୍ଟାନ୍ତ ।

## ଶଙ୍କର ଦାସ—

ଶଙ୍କର ଦାସଙ୍କ ସମ୍ବନ୍ଧରେ ଅଦ୍ୟାବଧି କୌଣସି ତଥ୍ୟ ମିଳି ନାହିଁ । ତାଙ୍କର କୋଇଲିଟି ଖୁବ୍ ଜନପ୍ରିୟ । କୋଇଲିର ନମୁନା ଦେଖାଇବା ନିମନ୍ତେ ଏହି ପୁସ୍ତକରେ ଉଦ୍ଧୃତ ହେଲା ।

## ରଘୁନାଥ ହରିଚନ୍ଦନ—

ରାଜା ରଘୁନାଥ ହରିଚନ୍ଦନ ୧୮ଶ ଶତାବ୍ଦୀରେ ବାଣପୁରରେ ରାଜତ୍ୱ କରୁଥିଲେ । ତାଙ୍କର "ଶକୁନ୍ତଳା ଉଲ୍ଲାସ" ଓ "ଲୀଳାବତୀ" କାବ୍ୟ ଅଦ୍ୟାବଧି ଅପ୍ରକାଶିତ ଭାବରେ ରହିଛି । ତାଙ୍କର ଲେଖାରେ ସଂସ୍କୃତର ଛାୟା ବହୁ ପରିମାଣରେ ପଡ଼ିଛି । ତାଙ୍କର ବର୍ଣ୍ଣନା-ଗୁଡ଼ିକରେ ଯଥେଷ୍ଟ ରମଣୀୟତା ଅଛି । ପ୍ରକାଶ କରା ଯାଇଥିବା ଛାନ୍ଦଟି ଏହାର ଉଦାହରଣ ।

## ପଦ୍ମନାଭ ଶ୍ରୀଚନ୍ଦନ—

ପଦ୍ମନାଭ ଶ୍ରୀଚନ୍ଦନ ଅଷ୍ଟାଦଶ ଶତାବ୍ଦୀରେ ବାଣପୁରରେ ରାଜତ୍ୱ କରୁଥିଲେ । ତାଙ୍କର "ଶଶିରେଖା" କାବ୍ୟ

ଉପେନ୍ଦ୍ର ଭଞ୍ଜଙ୍କ "ଲାବଣ୍ୟବତୀ" କାବ୍ୟର ଅନୁକରଣରେ ଲିଖିତ ହୋଇଅଛି । ତାଙ୍କର ଭାଷା ଖୁବ୍ ସରଳ । ବର୍ଣ୍ଣନାରେ କବି ଖୁବ୍ ପାରଦର୍ଶିତା ଦେଖାଇଛନ୍ତି । ଉଦ୍ଧୃତ କବିତାଠିରୁ ଏହା ଭଲ ଭାବରେ ଜଣା ପଡ଼ିବ ।

**ବିଶ୍ୱନାଥ ଖୁଣ୍ଟିଆ—**

ବିଶ୍ୱନାଥ ଖୁଣ୍ଟିଆଙ୍କ "ବିଚିତ୍ର ରାମାୟଣ"ର ଆଦର ଖୁବ୍ ବେଶି । ଯେଉଁମାନେ ଛାନ୍ଦ ଗାଇ ଜାଣନ୍ତି, ବିଶିରାମାୟଣରୁ ଖଣ୍ଡେ ଅଧେ ନିଶ୍ଚୟ ଶିଖିଥାନ୍ତି । ଭାଷା ଖୁବ୍ ସରଳ ଓ ଛାନ୍ଦଗୁଡ଼ିକ ଖୁବ୍ ମର୍ମସ୍ପର୍ଶୀ ହୋଇଥିବା ଯୋଗୁଁ କାବ୍ୟଟି ଏତେ ଆଦର । ଏହି କାରଣରୁ ବିଶିରାମାୟଣରୁ ଛାନ୍ଦଟିଏ ଦିଆଗଲା । କବି ଅଷ୍ଟାଦଶ ଶତାବ୍ଦୀରେ ଜୀବିତ ଥିଲେ ।

**କେଶବ କବିରାଜ—**

"ଅନଙ୍ଗ ରଙ୍ଗିଣୀ"ର କବି କେଶବଙ୍କ ସମ୍ବନ୍ଧରେ କିଛି ଜଣା ଯାଇ ନାହିଁ । ତାଙ୍କର ପଦଲାଳିତ୍ୟ ଓ ବର୍ଣ୍ଣନାର ଛଟା ଦେଖାଇବା ନିମନ୍ତେ ଛାନ୍ଦଟି ଦିଆଗଲା । "ଅନଙ୍ଗରଙ୍ଗିଣୀ" ଗୋଟିଏ କାଳ୍ପନିକ କାବ୍ୟ ।

**ଦୀନକୃଷ୍ଣ ଦାସ—**

କବି ଦୀନକୃଷ୍ଣ ଓଡ଼ିଶାର ଘରେ ଘରେ ପରିଚିତ । ତାଙ୍କର ରସକଲ୍ଲୋଳର ସମକକ୍ଷ କାବ୍ୟ ଓଡ଼ିଆ ସାହିତ୍ୟରେ ଖୁବ୍ କମ୍ ଅଛି । ଉପେନ୍ଦ୍ରଭଞ୍ଜ ଯେପରି "ବ"ରେ ଆରମ୍ଭ କରି "ବୈଦେହୀଶ-ବିଳାସ" ଲେଖିଛନ୍ତି, ଦୀନକୃଷ୍ଣ ସେହିପରି "କ"ରେ ଆରମ୍ଭ କରି "ରସକଲ୍ଲୋଳ"ଟି ଲେଖିଛନ୍ତି । ଦୀନକୃଷ୍ଣଙ୍କ ପଦାବଳୀ ପଥର ହୃଦୟକୁ ମଧ୍ୟ ତରଳାଇ ଦେବ । ଉଦ୍ଧୃତ କବିତାଟି ତାର ଜ୍ୱଳନ୍ତ ଦୃଷ୍ଟାନ୍ତ । କବି ଜାତିରେ ରାଜପୁତ । ସୁବର୍ଣ୍ଣରେଖା ତୀରସ୍ଥ

ଆଠଦଣ୍ଡପାଟଣରେ ୧୮ଶ ଶତାବ୍ଦୀରେ ସେ ଜନ୍ମଗ୍ରହଣ କରିଥିଲେ । ତାଙ୍କର କାବ୍ୟମାନଙ୍କ ମଧ୍ୟରେ ରସକଲ୍ଲୋଳ ଉତ୍କୃଷ୍ଟ ।

## ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା—

୧୮ଶ ଶତାବ୍ଦୀରେ ଉତ୍କଳ ସାହିତ୍ୟର ଅଙ୍ଗ ପୁଷ୍ଟି ସାଧନରେ ଯେଉଁମାନେ ବିଶେଷ ଭାବରେ ଯଶସ୍ୱୀ, ସେମାନଙ୍କ ମଧ୍ୟରୁ ଜଣେ ପ୍ରଧାନ ବ୍ୟକ୍ତି ହେଉଛନ୍ତି କବି ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା । ତାଙ୍କର ଅନେକ କାବ୍ୟ ଅପ୍ରକାଶିତ ଅଛି । କବି ନୟାଗଡ଼ରେ ବ୍ରାହ୍ମଣକୁଳରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପ୍ରଥମ ନାମ ସାଧୁଚରଣ ଥିଲା । ପରେ ବୈଷ୍ଣବ ଧର୍ମ ଅବଲମ୍ବନ କରିବାରୁ ତାଙ୍କୁ ସଦାନନ୍ଦ ବୋଲି ପରିଚୟ ଦେଲେ । ଗୌଡ଼ୀୟ ବୈଷ୍ଣବ ଶାସ୍ତ୍ରମାନଙ୍କ ଅବଲମ୍ବନରେ ସେ ଅନେକ କାବ୍ୟ ଲେଖିଛନ୍ତି । ବଙ୍ଗଳାରେ ମଧ୍ୟ ସେ କେତେକ ଗ୍ରନ୍ଥ ଲେଖିଥିବାର ପ୍ରମାଣ ମିଳେ । ପ୍ରେମ ବର୍ଣ୍ଣନାରେ କବିଙ୍କ ଲେଖଣୀ ଖୁବ୍ କୃତକାର୍ଯ୍ୟ ହୋଇଛି । ତାଙ୍କର ପ୍ରତିଭାର ସାମାନ୍ୟ ପରିଚୟ ଦେଖାଇବା ନିମନ୍ତେ "ଅନୁରାଗ" ଗ୍ରନ୍ଥରୁ "ପ୍ରେମ-ତରଙ୍ଗିଣୀ"ରୁ ଦିଆଗଲା ।

## ବ୍ରଜନାଥ ବଡ଼ଜେନା—

ବ୍ରଜନାଥ ୧୮ଶ ଶତାବ୍ଦୀରେ ଜୀବିତ ଥିଲେ । ସେ ଜାତିରେ ଶଷ୍ଟକରଣ । ହିନ୍ଦିରେ ଓ ଓଡ଼ିଆରେ ସେ ଖୁବ୍ ଦକ୍ଷତା ସହକାରେ କାବ୍ୟ କବିତା ଲେଖି ଯାଇଅଛନ୍ତି । ତାଙ୍କର "ଚତୁରବିନୋଦ" ଗଦ୍ୟ ଗ୍ରନ୍ଥ । ସେହି ସମୟରେ କୌଣସି ଲେଖକ ଏତେ ବଡ଼ ଗଦ୍ୟ ଗ୍ରନ୍ଥ ଲେଖି ନାହାନ୍ତି । ଆକାର ଓ ମାର୍ଜିତ ଭାଷା ଦିଗରୁ ବ୍ରଜନାଥ ଓଡ଼ିଆ ଗଦ୍ୟର ପ୍ରବର୍ତ୍ତକ କହିଲେ ଅତ୍ୟୁକ୍ତି ହେବ ନାହିଁ । "ସମର ତରଙ୍ଗ" କାବ୍ୟ ବ୍ରଜନାଥଙ୍କର ସର୍ବୋତ୍କୃଷ୍ଟ

ରଚନା । ପୃଥିବୀର ସାହିତ୍ୟରେ ମଧ୍ୟ ଏପରି କାବ୍ୟ ଖୁବ୍ କମ ଅଛି । ୧୭ଶ ଶତାବ୍ଦୀର ଶେଷ ଭାଗରେ ଢେଙ୍କାନାଳର ରାଜା ତ୍ରିଲୋଚନ ମହୀନ୍ଦ୍ର ବାହାଦୂର ଓ ମରହଟ୍ଟା ସୁବାଦାର ରାଜାରାମ ପଣ୍ଡିତଙ୍କ ମଧ୍ୟରେ ଯେଉଁ ଯୁଦ୍ଧ ହୋଇଥିଲା, ସେହି ଘଟଣାକୁ ଅବଲମ୍ବନ କରି କାବ୍ୟଟି ଲିଖିତ ହୋଇଛି ! କାବ୍ୟଟି ପଢ଼ିଲାବେଳେ ସତେ ଯେପରି ଆମ ଆଖି ଆଗରେ ଯୁଦ୍ଧଟି ଅଭିନୀତ ହେଉଛି । ଏପରି ଜୀବନ୍ତ ଅଥଚ ପ୍ରକୃତ ଚିତ୍ର ଆଜିପର୍ଯ୍ୟନ୍ତ ଓଡ଼ିଶାର କୌଣସି କବି ଦେଇ ପାରି ନାହାନ୍ତି ବୋଲି ମନେ ହୁଏ । ତାଙ୍କର ଭାଷା ଯେପରି ଜୀବନ୍ତ, ରଚନାଭଙ୍ଗୀ ସେହିପରି ଉତ୍କୃଷ୍ଟ । ତାଙ୍କ ରଚନାର ମାଧୁରୀ ଅନୁଭବ କରିବାକୁ ହେଲେ "ସମରତରଙ୍ଗ" ବାରମ୍ବାର ପଢ଼ିବା ଉଚିତ । ଉଦ୍ଧୃତ ଗ୍ରନ୍ଥଟିରୁ ଏହାର କିଞ୍ଚିତ୍ ଆଭାସ ମିଳି ପାରିବ ।

ଅଭିମନ୍ୟୁ ସାମନ୍ତସିଂହାର—

ଅଭିମନ୍ୟୁ ୧୮ଶ ଶତାବ୍ଦୀର କବି । ସେ କଟକ ଜିଲ୍ଲାର ବାଲିପାଟଣାରେ ରାଜବଂଶରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର "ବିଦଗ୍ଧଚିନ୍ତାମଣି"ର ଜନପ୍ରିୟତା ବିଷୟ କଣ ବୋଲି ବର୍ଣ୍ଣନା କରିବୁ ? ଏତେ ସୁନ୍ଦର ହୃଦୟଗ୍ରାହୀ ରଚନା ଉତ୍କଳ ସାହିତ୍ୟରେ ଖୁବ୍ କମ୍ ଅଛି । କାବ୍ୟଟି ଯେପରି ମନୋହର, ସେହିପରି ପାଣ୍ଡିତ୍ୟ-ପୂର୍ଣ୍ଣ ମଧ୍ୟ । ଆଦିରସ ଗ୍ରନ୍ଥଟିରେ ବିଶେଷ ଭାବରେ ସ୍ଥାନ ପାଇଥିଲେ ସୁଦ୍ଧା ତା ଛଡ଼ା ଅନେକ ଉତ୍କୃଷ୍ଟ ଅଂଶ ଅଛି । ଏହାର ଉଦାହରଣ ସ୍ୱରୂପ ଏହି ଗ୍ରନ୍ଥଟି ଉଦ୍ଧାର କରାଗଲା ।

ଭକ୍ତଚରଣ ଦାସ—

ଓଡ଼ିଶାରେ "ମଥୁରାମଙ୍ଗଳ" କିଏ ନ ଜାଣେ ? ଏହି କ୍ଷୁଦ୍ର କାବ୍ୟଟି ଜାତିକୁ ଅନେକ ଦିନ ହେଲା କିଣି ନେଇଛି । ଏଥିର ଭାଷାର ସରଳତା ଅତୁଳନୀୟ । ପ୍ରକୃତ କାବ୍ୟର ମାଧୁରୀ ଅନୁଭବ

ଜଗନ୍ନାଥ ପାଇଁ ଗ୍ରନ୍ଥଟିଏ ଉତ୍ସର୍ଗ କରାଗଲା । କବି ୧୮ଶ ଶତାବ୍ଦୀରେ ଜୀବିତ ଥିଲେ ବୋଲି ଜଣାଯାଏ ।

**କେଶବ ପଟ୍ଟନାୟକ—**

କବି ୧୮ଶ ଶତାବ୍ଦୀରେ ଜୀବିତ ଥିଲେ । ତାଙ୍କର "କେଶବ ରାମାୟଣ" ବା "ନୃତ୍ୟ ରାମାୟଣ" ପରି ଆଉ ଗୋଟିଏ ଗ୍ରନ୍ଥ ଉତ୍କଳ ସାହିତ୍ୟରେ ଅଛି କି ନାହିଁ ସନ୍ଦେହ । ଏତେ ସୁନ୍ଦର କାବ୍ୟ ଆଜ ପର୍ଯ୍ୟନ୍ତ ଆମର ଦୃଷ୍ଟିକୁ ଆସି ନ ଥିଲା । ତାହାକି ପଢ଼ିଲା-ବେଳେ ମନ ଏକାବେଳକେ ତନ୍ମୟ ହୋଇଯାଏ । ପ୍ରତ୍ୟେକ ପଦରେ ପ୍ରାଣରସ ଭରା ହୋଇ ରହିଛି । ଉଦ୍ଧାର କରିବାର ଜଣାଣ ବହୁତ ଅଛି । କେବଳ ସ୍ଥାନାଭାବରୁ ଗୋଟିଏ ସ୍ଥାନ ଦିଆଗଲା । ଭାଷାରେ ସ୍ୱାଧୀନ ବଶିଷ୍ଟତା ରହିଛି । ଅନେକ ସ୍ଥଳରେ ଦେଶୀ ଭାଷାକୁ, ପ୍ରାଣର ଭାଷାକୁ କବି ଖୁବ୍ ରମଣୀୟ କରି ଥୋଇ ପାରିଛନ୍ତି । କି ବର୍ଣ୍ଣନାଚାତୁରୀ, କି ଶବ୍ଦବିନ୍ୟାସ, କି ଭାବପ୍ରକାଶ-ଭଙ୍ଗୀ, ସବୁ ବିଷୟରେ କେଶବ କୃତିତ୍ୱ ଦେଖାଇଅଛନ୍ତି ।

**କିଶନ୍ଦ୍ରାୟ୍ ରାଣୀ—**

"ପଦ୍ମବତୀ-ଅଭିଳାଷ" ପ୍ରଣେତ୍ରୀ ବୁଢ଼ାରସିଂଗି ରାଜା ଦଣ୍ଡଙ୍କ ରାଣୀଙ୍କ ସ୍ତ୍ରୀ । ସେ ଅଷ୍ଟାଦଶ ଶତାବ୍ଦୀର ଶେଷ ଭାଗରେ କିମ୍ବା ଊନବିଂଶ ଶତାବ୍ଦୀର ପ୍ରାରମ୍ଭରେ ଜନ୍ମଗ୍ରହଣ କରିଥିଲେ । ପଦ୍ମାବତୀ-ଅଭିଳାଷର ଭାଷା ଖୁବ୍ ସରଳ ଓ ଲଳିତ । ଖାଲି ଉଚ୍ଚ ଧରଣର । ତାଙ୍କର ବର୍ଣ୍ଣନାଗୁଡ଼ିକ ବଡ଼ [illegible] ଉଦାହରଣ ସ୍ୱରୂପ ବସନ୍ତ ବର୍ଣ୍ଣନାଟି ଦିଆଗଲା ।

ସଂପାଦକ

—o—

# ସୂଚୀ

# କବିତା-କୌମୁଦୀ



## ଭୀମ-ଦୁଃଶାସନ ଯୁଦ୍ଧ

### ( ସାରଳା ଦାସ—ମହାଭାରତ, କର୍ଣ୍ଣପର୍ବ )

ନିଃଶଙ୍କେ ରଣ କରଇ ଦୁଃଶାସନ ବୀର
ଘୋର ମୂର୍ତ୍ତି ଦେଖି ସୈନ୍ୟ ପଳାଇଲେ ଦୂର ।
ନକୁଳ କହିଲେ ଯାଇ ଭୀମସେନ ପାଶ
ଶିଖଣ୍ଡିକି ଦୁଃଶାସନ କରିଲା ବିନାଶ ।
ଶୁଣିଣ ଭୀମ କହିଲେ କାହିଁ ସେ ପାମର
ଖୋଜ ଖୋଜ ପାଉ ନାହିଁ ଯେ ଭେଟ ତାହାର ।"
ଏହା କହି ଦଉଡ଼ିଲେ ଭୀମ କୋପ ବଢ଼ାଇ
ଆଗେ ନକୁଳ ଧାମନ୍ତ ପଥକୁ ଦେଖାଇ ।
ନେଇ ଦୁଃଶାସନ ଆଗେ କରାଇଲେ ଭେଟ
ଭୀମକୁ ଦେଖି ହରଷ ଧୃତରାଷ୍ଟ୍ର ଗୃଟ ।
ଚନ୍ଦ୍ରକୁ ଦେଖି ଯେସନେ ରାହୁ ତେଜ କରେ
ଭୀମକୁ ଦେଖିଣ ଦୁଃଶା ହୁଏ ସେ ପ୍ରକାରେ ।
ଗିରିବର ପରକାରେ ଦିଶଇ ଶରୀର
ଆରେ ରେ ପାଣ୍ଡବା ବୋଲି ଡାକେ ଦୁଃଶା ବୀର ।
ବୋଲଇ "ଭାଇଙ୍କୁ ମୋର ମାଇଲୁ ରେ ରଣେ
କନିଷ୍ଠ ବଧ କଲୁ ରେ କେବଣ କାରଣେ ।

ଏତେବେଳେ ପଡ଼ିଲୁ ରେ ଆସି ମୋ ସମ୍ମୁଖ
ବୁଝି ମଲେ ସ୍ୱାଡ଼ବ ରେ ଭାଇଙ୍କର ଶୋକ ।
ତୋତେ ମାଧ୍ୱ ଦେବଇଁ ଯେ ଆଜ ବଣାବଳୀ
କେମନ୍ତେ ରଖିବ ଗଉଡ଼ ସେହି ବନମାଳୀ ?
ଅଧର୍ମେ ନାଶ କଲୁ ମୋ ନିର୍ଦ୍ଦୋଷୀ ଭାଇଙ୍କୁ
ଆଜ ପଠାଇବ ତୋତେ ତାହାଙ୍କ ପାଶକୁ ।"
ପୁଣ ପୁଣ ପ୍ରତିଜ୍ଞା ଯେ କରେ ଦୁଃଶାସନ
"ଧର୍ମପଥେ ସଦା ତୁମ୍ଭେ କର ରେ ଗମନ ।
ଭୋଜନ ଦେବାକୁ ଘରା ନେଇଥିଲ ମୋତେ
ମିଷ୍ଟାନ୍ନ ସଙ୍ଗରେ ବିଷ ଦେଲ ରେ କେମନ୍ତେ ?
ବିଷଘାତେ ଅଚେତନ ହୋଇଲ ମୁଁ ଯହୁଁ
ହାତଗୋଡ଼ ବାନ୍ଧି ଜଳେ ଫିଙ୍ଗିଦେଲ ତହୁଁ ।
ଘର ଏକ ଛାଇଁଲ ବାରୁଣାବନ୍ତରେ
ଜଉ ଘୃତ ଛଣପଟ ଝୁଣା ମିଶ୍ରିତରେ ।
ପୁରୋଚନ ପଣ୍ଡିତଙ୍କୁ ରେ ଗୁପତେ ପଠାଇ
ନିଆଁ ଲଗାଇଲ ପୁଣି ସେହି ଘରେ ଯାଇ ।
ଚଉଦ ବରଷ ମାତ୍ର ଅଭିମନ୍ୟୁସୁତ
ସକଳେ ମିଶି ତାହାକୁ କରିଲ ନିହତ ।
କପଟ ପାଶା ଖେଳାଇ ନେଲ ରାଜ୍ୟଧନ
କହିଲେ ନ ସରେ ଭାଇ ତୁମ୍ଭର ଯେ ଧର୍ମ ।
ଦ୍ରୌପଦୀର କେଶ ତୁହି ଧରିନେଲୁ ବଳେ
ପୁଣି ବିବସନ କଲୁ ତାକୁ ସଭାତଳେ ।
ସେହି ଦିନୁଁ କେଶ ସେହି ନ କଲା ବନ୍ଧନ
ତୋତେ ଲେଉଡ଼ି ନ ପାଉଛି ଆରେ ଦୁଃଶାସନ !

ଏତେକାଳେ ତୋର ମୋର ଭେଟ ହୋଇଅଛି
ଯାଜ୍ଞସେଣୀ ଆଜ ବେଶ ସାଜବ କହୁଛି ।"
ଭୀମଙ୍କ ପ୍ରତିଜ୍ଞା ସେହି ନ ପାରିଲ ସହି
ଆଗେ ଦୁଃଶା ପ୍ରହାରିଲା ଲୌହ ଶର ନେଇ ।
ପ୍ରତିଶର କରି ଭୀମ ତାଁ କଲେ ଛେଦନ
ତାହା ଦେଖି କୋପମାନ ହୋଇ ଦୁଃଶାସନ ।
ଶରେ ଶର ପଡ଼ି ତହୁଁ ଉଠିଲା ଅନଳ
ସେ ନିଆଁରେ ରଣସ୍ଥଳ ଦିଶଇ ଉଜ୍ଜ୍ୱଳ ।
ହାବୋଡ଼ା ଶର ମାଇଲା ଧୃତରାଷ୍ଟ୍ର ସୁତ
ସେ ଶରେ ଭୀମଙ୍କ ରଥ ହେଲା ଚୂର୍ଣ୍ଣୀଭୂତ ।
ତହୁଁ ଭୀମସେନ କରି ପାଦରେ ସଞ୍ଚାର
ଦୁଃଶାସନ ରଥେ ଗଦା କରିଲେ ପ୍ରହାର ।
ଗଦାଘାତେ ଦୁଃଶାସନ ରଥ ହେଲା କ୍ଷୟ
ଅଶ୍ୱ ସାରଥି ସକଳେ ଗଲେ ଯମାଳୟ ।
କୋପେଣ ଡାକ ଦିଅଇ କୁରୁକୁଳଷଣ୍ଢ
ଚନ୍ଦ୍ରକରଣକୁ ଜଣି ଦିଶେ ଫଲାଖଣ୍ଡ ।
ଦୁଃଶାସନ ଗୁଣ ଦେଖି ଭୀମ ହୋଇ ରାଗ
ଘୋର ଗର୍ଜନ କରିଣ ଧଇଲେ ଖଡ଼୍ଗ ।
ବନମ ସିଂହକୁ ଜଣି ଦୁଇ ମହାବଳ
କ୍ରୋଧେ ପିଠାପିଠି ହେଲେ ଠିଆ ହୋଇ ଭଲ ।
ଅଧରେ ରଦନ ଚାପି ରେରେକାର କରି
ଦୁହେଁ ଧରା ଧରି ହୋଇ ହେଲେ ମରାମରି ।
ଦୁହେଁ ଦୁହିଙ୍କର ଖଣ୍ଡା ବୁଲନ୍ତ ଆମଞ୍ଚି
ଦୁଇ ରଣଷଣ୍ଢ ଯାନ୍ତ ଯୂଟେ ପଥ ଘଞ୍ଚି ।

ପୁଣି ଦୁଇଜଣ ଆସି ମୁଣ୍ଡେ ମୁଣ୍ଡ ଲଢ଼ି
ଧରାଧରି ହୋଇ କରି ଯାନ୍ତି ଗଡ଼ାଗଡ଼ି ।
ଏହିପରି ଦୁହେଁଯାକ ଘୋର ରଣେ ମଜ୍ଜି
ଦୁହିଙ୍କର ଧରିଥିବା ଖଣ୍ଡା ଗଲା ଭାଜି ।
ଦୁହିଙ୍କର ରଣାଘାତେ ମେଦିନୀ କମ୍ପିଲା
ଉଲ୍‌କାପାତ ହେଲା ପରି ଚୌଦିଗ ଦିଶିଲା ।

× × ×

ପଦାଘାତେ ପର୍ବତାଳେ କମ୍ପେ ତଳ ପୁର
ଦୁଇ ବୀର ଗଦା ଧରି କରନ୍ତି ସମର ।
ଉଠନ୍ତି ପଡ଼ନ୍ତି-ପୁଣ ଗଡ଼ନ୍ତି ମଧ୍ୟରେ
ପୃଥିବୀ କମ୍ପେ ଦୁହିଙ୍କ ଗଦା ଆଘାତରେ ।
ହିମାଳୟ ଗିରି ତୁଲ୍ୟ ଦୁହିଙ୍କ ଶରୀର
ରଣାଘାତେ ଦୁଃଶାସନ ଗଦା ହେଲା ଚୂର ।
ଶୂନ୍ୟହସ୍ତ ହେଲା ଯହୁଁ ଧୃତରାଷ୍ଟ୍ରସୁତ
ଘୁଞ୍ଚିଯାଇ ଠିଆ ହେଲା ରଣ କରି ତ୍ୟକ୍ତ ।
"ଆସ ଆରେ ଦୁଃଶାସନ" ଡାକନ୍ତି ପାବନୀ
"ପଳାଇ ପାରିବୁ କରେ ଜୀବନକୁ ଘେନ ?"
ତାହା ଶୁଣି ଦୁଃଶାସନ କହିଲା ଉତ୍ତର,
"ଶୂନ୍ୟହସ୍ତ ହେଲି ଗଦା ଚୂର୍ଣ୍ଣ ହେଲା ମୋର ।"
ଭୀମ ବୋଇଲେ "ଛାଡ଼ିଲି ମୋର ଗଦା ତେବେ
ଆସ ସମର କରିବା ଶୂନ୍ୟହସ୍ତେ ଏବେ ।"
ଦୁଃଶାସନ ଶୂନ୍ୟହସ୍ତେ ଆସିଲା ଲେଉଟି
ପୁଣି ବିଧା ଗୃପୁଡ଼ାରେ ହେଲେ ପିଟାପିଟି ।
ଛାତିକି ଛାତି ଲଗାଇ ଘୁଞ୍ଚିଯାନ୍ତି ପୁଣି,
ହାତ ଧରାଧରି ହୋଇ ହୋନ୍ତି ଟଣାଟଣି ।

ଭୁଜକୁ ଭୁଜରେ ଛନ୍ଦି ମୁଣ୍ଡେ ମୁଣ୍ଡ ପିଟି
ପୁଣି କେହି ପଡ଼ିଯାଇ ତଳେ ଯାଏ ଲୋଟି ।
ସତ୍ୟ ଯୁଗରେ ଯେମନ୍ତେ କେତୁକା ମଙ୍ଗଳ
ସମର କରନ୍ତେ ମହି ହେଲା ଟଳମଳ ।
ସେହିପରି ଦୁଃଶାସନ ଭୀମଙ୍କର ରଣ
ଆକାଶେ ଥାଇ ଦେଖନ୍ତି ଦେବଲୋକଗଣ ।
ଭିଡ଼ାଭିଡ଼ି ପଡ଼ାପଡ଼ି ହୋଇ ବେନି ବୀର
ଲୋମ କୂପରୁ ରକତ ବହେ ଝର ଝର ।
କେହୁ କାହା ଜାନୁତଳେ ଚାପିଧରେ ମୁଣ୍ଡ
କେ ନଖେ ବଦାରିବାକୁ କରେ ଖଣ୍ଡ ଖଣ୍ଡ ।
ରକ୍ତ ମାଂସରେ ଜଡ଼ିତ ଦୁଇଙ୍କର କାୟ
ଦୁହେଁ ଦିଶନ୍ତି ଜାମଳା ତରୁବର ପ୍ରାୟ ।
ମୃତପିଣ୍ଡ ରକ୍ତମାଂସ ହୋଇଲା କାଦୁଅ
ସହି ନ ପାରି କମ୍ପିଲା ଧରା ଅତିଶୟ ।
ଭୁଜେ ଭୁଜ ପ୍ରହାରଣ କରନ୍ତି ଗର୍ଜ୍ଜନ
ରଟମଟ ଚୋବାଅନ୍ତି ଆପଣା ବଦନ ।
ବିକଟ ମୁଖ ଅଧରେ ରଦନକୁ ଚାପି,
ମନ୍ଦର ଗିରି ପ୍ରାୟେକ ଦୁହେଁ ବୀର ରୁପୀ ।
ତଳେ ପଡ଼ିଥିଲା ଯେଉଁ ହାଡ଼ ମେଦ ମାଂସ
କର୍ଦ୍ଦମ ହୋଇଣ ସେହୁ ଛୁଟିଲ ଆକାଶ ।
ବାର ଯୋଜନ ଓସାର ଅଟେ ରଣଭୂଇଁ
ଗଡ଼ି ଗଡ଼ି ଯଥାସ୍ଥାନେ ମିଳନ୍ତି ସେ ଦୁଇ ।
ଉଭୟ ଦଳର ସୈନ୍ୟ ଗଲେ ଅପସରି
ଦେଖଣାହାରି ଦେଖିଲେ ଠିଆ ହୋଇ କରି ।

ତ୍ରେତାରେ ବାଳୀ ସୁଗ୍ରୀବ ଯଥା କଲେ ରଣ
ଭୀମ ଦୁଃଶାସନ ଯୁଦ୍ଧ ସେହିପରି ଜାଣ ।
ନାରଦ ଥଇଲେ ଯେନ କଳିର ଧୋକଡ଼
"ଲାଗୁ ଲାଗୁ" କହି ମୁନି ତହିଁ ଦେଲେ ଝାଡ଼ ।
ଲାଗିଲା ଦୁହିଙ୍କ ରଣ ହୋଏ ଅତିଶୟ
ନାଚନ୍ତି ଆନନ୍ଦ ହୋଇ ସେ କଳହପ୍ରିୟ ।
ଭୀମ ଦୁଃଶାସନ ଦୁହେଁ କରନ୍ତି ସମର
ରଥ ଗଜ ଅଶ୍ୱ ସବୁ ହେଉଛନ୍ତି ଚୂର ।
କରନ୍ତି ଘୋର ସମର ତହିଁ ବେନି ବୀର
କମ୍ପିଲା ସ୍ୱର୍ଗ ମରତ ପାତାଳ ଯେ ପୁର ।
ପଡ଼ି ଉଠି କରି ଏକ ଅନ୍ୟକୁ ଭିଡ଼ନ୍ତି
ଭୂମି ଆକର୍ଷି ମାରନ୍ତି କରି ପାଦଗଣ୍ଠି ।
ବାହୁ ସ୍ଫୋଟ କରି ଘାତେ ଉଠନ୍ତି ବହନ
କାଳଚକ୍ର ପ୍ରାୟେ ଦେହ ବୁଲନ୍ତି ନୟନ ।
ଅବଶ ହେଲେ ଆସ୍ୱାସ ନ ଲଭନ୍ତି ବେନି
ଦୁହିଙ୍କର ପାଦଘାତ ନ ସହେ ମେଦିନୀ ।
ଭୀମସେନକୁ ଗଡ଼ାଇ ଧୃତରାଷ୍ଟ୍ରସୁତ
ଛାତି ଉପରେ ମାଡ଼ିଣ ବସିଲା ତୁରିତ ।
ହିମବନ୍ତକୁ ମନ୍ଦର ଚପିଲାର ପରି
ଭୀମଙ୍କୁ ଚପିଣ ଦୁଃଶା ହସେ ସେହିପରି ।

× × ×

ତଳେ ପଡ଼ିଥିଲେ ଭୀମ ହୋଇ ରଣଭୋଳ
ମାଡ଼ି ବସିଥିଲା ଦୁଃଶା ତାଙ୍କ ବକ୍ଷସ୍ଥଳ ।
କହନ୍ତି ଅଗସ୍ତି ମୁନି ଶୁଣ ନୃପବର
ପାଞ୍ଚଜନ୍ୟ ଶଙ୍ଖ ଧରି ଯାଦବ-ଈଶ୍ୱର;

ଶତଶୃଙ୍ଗ ଶତଶୃଙ୍ଗ ବାଇଲେ ଦୃଢ଼ରେ
ଭୀମ ପଡ଼ିଥିଲେ ତଳେ ଶୁଣିଲେ କର୍ଣ୍ଣରେ ।
ଶତଶୃଙ୍ଗକୁ ସ୍ମରଣ କଲା ଚହୁଁ ଭୀମ
ଏକୋତ୍ତର ସିଂହର ତା ହେଲା ପରାକ୍ରମ ।
ଏକୋତ୍ତରଶତ ସିଂହବଳକୁ ପ୍ରକାଶି
ଉଲଟାଇ ବୃକୋଦର ରୁପେ ମାଡ଼ି ବସି ।
ଜଘନ ଘଟକେ ମାଡ଼ି ବସିଲା ଦୁଃଶାକୁ
ଗୋଚର ନୋହିଲା ତାହା ଉଭୟ ଥାଟକୁ ।

* * * *

# ସୀତାଙ୍କ ଅଗ୍ନି ପରୀକ୍ଷା

## ( ବଳରାମ ଦାସ—ରାମାୟଣ, ଲଙ୍କାକାଣ୍ଡ )

ଏଥୁ ଅନନ୍ତରେ ସେ ଯେ ଜନକଦୁହିତା
ପଟ୍ଟ ଆର ଭିତରେ ଗୃଳନ୍ତି ଦେବୀ ସୀତା ।
ମତ୍ତଗଜଗମନୀ ଯେ ଧୀରେ ଧୀରେ ଯାଏ
ଜଳେ ହଂସୀ ଗମନ ଯେସନେ ପାଏ ପାଏ ।
ଶରୀର ଝଟକକ ବଜୁଳ ତେଜ ଜିଣି,
ଷୋଳକଳା ଶଶୀ ଖସି ପଡ଼େ କି ଧରଣୀ ?
ନିର୍ଧୂମ ଅଗ୍ନି କି ଅବା ଆସୁଅଛି ଜଳି
ନବରତ୍ନେ ଜଡ଼ିତ କି ସୁବର୍ଣ୍ଣ ପିତୁଳି !
ଋକ୍ଷ ରାକ୍ଷସ କପି ଦେଖିଣ ମୋହି ଯାନ୍ତି
ବେଣ୍ଟକାରେ ଯେହ୍ନେ ବନଜୀବଙ୍କୁ ଦେଖନ୍ତି ।
ସ୍ୱର୍ଗପୁରେ ଦେବତାଏ ସ୍ତମ୍ଭିଭୂତ ହୋଇ
ଜାନକୀର ରୂପକୁ ସେ ଅଛନ୍ତି ଅନାଇ ।
ଶ୍ରୀରାମର ସନ୍ନିଧେ ମିଳିଲେ ଚନ୍ଦ୍ରମୁଖୀ
ସେନାପତି ଯୂଥପତି ଚମତ୍କାର ଦେଖି ।
ମକର ଆଦିତ୍ୟ କି ପ୍ରଥମେ ଉଇଁ ଆସି
ଶ୍ରୀରାମର ଚରଣୀ ତେସନ ପ୍ରାୟେ ଦିଶି ।
ରାମଙ୍କୁ ନମସ୍କାର କଲେକ ବଇଦେହୀ
ଦୁଇ ଭିଡ଼ା ପଛକୁ ଘୁଞ୍ଚିଣ ଊଭା ହୋଇ ।
"ହେ ଦଶରଥନନ୍ଦନ" ବୋଲି ସୀତା କାନ୍ଦି
"ମୁହିଁ ପଡ଼ିଥିଲି ଯେ ଅସୁର ଘରେ ବନ୍ଦୀ ।"

ଏ କର୍ମ ବିଧାତା ତୋତେ ମୋତେ ପୁଣି କଲା
ମୋ ପ୍ରସାଦେ ତୋତେ ଯେ କଳଙ୍କ ଉପୁଜିଲା ।"
ଏତେ ବୋଲି ଦେବୀ ଯେ ରୋଦଇ ଉଚସ୍ୱରେ
ରାମ ମଧ୍ୟରେ ଲୁହ ପକାନ୍ତି ଶୋକଭରେ ।
ମୁଖେ ବ୍ୟସନ ଦେଇଣ କାନ୍ଦନ୍ତି ଲକ୍ଷ୍ମଣ
କାନ୍ଦନ୍ତି ରାଜା ସୁଗ୍ରୀବ ଜାମ୍ବବ ସୁଷେଣ ।
ଅଙ୍ଗଦ ହନୁମନ୍ତ ଯେ ଗନ୍ଧମାଦନ
ମହୀନ୍ଦ୍ର ଦ୍ୱିବିଦ ଗବାକ୍ଷ ଯେ ସୁଶୋଧନ;
ନଳ ନୀଳ ଗବୟ ଯେ ପବନ ସମ୍ପାତ
ଦଶକାଳବୃଷ ଶତବଳ ଯେ କାନ୍ଦନ୍ତି ।
ରମଣୀ କାଳିନ୍ଦିନର ଶୋକ କଲ ନୋହି
ଋକ୍ଷ କପି କାନ୍ଦନ୍ତେ ଉଛୁଳି ଅଛି ମହୀ ।
ବିଭୀଷଣ ରାଜନ ସହିତେ ମନ୍ଦୋଦରୀ
ଲଙ୍କାପୁର ଅସୁରୀଏ ହାହାକାର କରି ।
ବାବୁ ବିଧାତା ରେ ଏହି ପତିବ୍ରତା ସତୀ
ରଘୁନାଥ ଏହାର ଅନୁରୂପ ଯେ ପତି ।
ଯୁବାକାଳେ ଦୁହେଁ ଯେ ହୋଇଲେ ଛଡ଼ାଛଡ଼ି
ତେର ମାସେ ପୁଣି ଆସି ଏବେ ଭେଟ ପଡ଼ି ।
ମୁରୁଛି ନୁଆରଣ ରୋଦନ କରୁଛନ୍ତି
କାନ୍ଦୁ କାନ୍ଦୁ ଲୋକେ ଏହା ମନେ ବିଚାରନ୍ତି ।
ଘଡ଼ିଏକ ପରସନ୍ତେ ରୋଦନ ସେ କଲେ
ଶୋକ ସମ୍ଭାଳଣ ଶ୍ରୀରାମଚନ୍ଦ୍ର ବୋଇଲେ—
"ଶୁଣସି ଜାନକୀ ଅଗୋ ଜନକଦୁଲଣୀ !
ତୋହର ନିମନ୍ତେ ମାଇଲି ମୁଁ ବଂଶପାଣି ।

ଅସୁର ବଳ ଧୂମାନ୍ତ କରି ପକାଇଲି
ସୁଗ୍ରୀବର ଛଳରେ ମୁଁ ବାଳିକି ମାରିଲି ।
ସମୁଦ୍ର ଭିତରେ ମୁଁ ବାନ୍ଧିଲି ସେତୁବନ୍ଧ
ଯଶ ପାଇବା ନିମନ୍ତେ ନାଶି ଦଶକନ୍ଧ ।
ତୋହର ନିମନ୍ତେ ଜାଣ ନୁହଇଁ ଏସନ
ଦେବଗଣେ ଅଜେୟ ମାରିଲି ଦଶାନନ ।
ରଘୁକୁଳର କଳଙ୍କ ଫେଡ଼ିବାର ଅର୍ଥେ
ଦଶକନ୍ଧ ଛେଦିଲି ବିଷମ ଶରଘାତେ ।
ଅସୁରର ଘରେ ଗୋ ଯେବଣ ନାରୀ ଥିଲା
ସେ ପୁଣି କୁଳକୁ ଗୋ କେମନ୍ତେ ଯୋଗାଇଲା ।
ମୁହିଁ ପରିଗ୍ରହ ଆଉ ନ କରଇ ତୋତେ
ତୁ ଜନକଦୁହିତା ନ ଯୋଗାଉ ଯେ ମୋତେ ।
ଦଶଦିଗରେ ତୁ ଯେଣେ ପାରୁ ତେଣେ ଯାଅ
ଆଉ ତୁ ମୋତେ ଗୋ ମନେ ଆଶା ନ ବଢ଼ାଅ ।”
ଶ୍ରୀରାମ ମୁଖରୁ ଯେ ଏସନ ଶୁଣି ବାଣୀ
ସ୍ତବଧ ହୋଇଲେ ଯେ ସକଳ ଲୋକ ଶୁଣି ।
ଦେହରୁ ଛୁଡ଼ି କି ଉଡ଼ି ଗଲା ତାଙ୍କ ପ୍ରାଣ
ସୁଗ୍ରୀବ ଅଙ୍ଗଦ ଜାମ୍ବବ ଯେ ବିଭୀଷଣ ।
ହନୁମନ୍ତ ନଳ ନୀଳ ଗନ୍ଧମାଦନ
ସୁଷେଣ ଲକ୍ଷ୍ମଣ ବୀର ମହେନ୍ଦ୍ର ଚନ୍ଦନ;
ଅଷ୍ଟସେନା ଆବର ପଞ୍ଚାଶ ଯୂଥପତି
ଋକ୍ଷ ରାକ୍ଷସ ଅନେକ କପି ଯେ ପ୍ରକୃତି;
ସ୍ତମ୍ଭୀଭୂତ ହୋଇଣ ବୃହାନ୍ତ ଜଳଜଳ
ଉପ୍ରୋଧ ଛୁଡ଼ି ବୋଇଲେ ଯନ୍ତୁଁ ରଘୁବାଳ ।

ଶୁଣି ବଇଦେହୀର ଯେ କପାଳ କନ୍ଦିଲା
ହୃଦପଦ୍ମ ମଧ୍ୟରେ ସେ କଥାନ୍ତ ବାନ୍ଧିଲା ।
ବସୁରିଲା "ରାମର ହୋଇଲା କୋପ ମୋତେ
ଭୁଞ୍ଜିବ ନାହିଁ କି ମୁହିଁ ଅର୍ଜିଅଛି ଯେତେ ?"
ଏତେକ ଶୁଣି ଦେବୀ ସ୍ତବଧ ହୋଇଅଛି
ପୁଣି ତମ ନ କଥି, ବୋଇଲେ ରଘୁବଚ୍ଛି—
"ଶୁଦ୍ଧ ଯେବେ ଦଶାଦ୍ଧରେ ନ ଥିବୁ ରେ ନାରୀ
ଭରତ ଲକ୍ଷ୍ମଣ ଭ୍ରାତା ଅଛଇ ମୋହର ।
ଏହାଙ୍କର ଘରଣୀ ହୋଇଣ ଘର କର
ଉଚିତ ନୋହିଲେ ବିଭୀଷଣକୁ ତ ବର ।
ଏ ଲଙ୍କା ନଗ୍ରକୁ ଗୋ କୈଳାସ ସୁଖେ ଥାଇ
ତୋହ୍ମଠାରେ ମୋହର ଗୋ କାର୍ଯ୍ୟ ଆଉ ନାହିଁ ।
ସୁଗ୍ରୀବ ଅଙ୍ଗଦ ହନୁ ଜାମ୍ବବକୁ ବୃହିଁ
ଯେ ମନକୁ ରୁଚଇ ଗୋ ବର ତାକୁ ଯାଇ ।"
ଶୁଣି ବଇଦେହୀ ଉଚ୍ଚେ ରୋଦନ ଯେ କଲା
ଶ୍ରୀରାମର ମୁଖ ଚାହିଁ ବଚନ ବୋଇଲା—
"ଋଷିଙ୍କର କୁଳେ ମୁହିଁ ହୋଇଅଛି ଜାତ
ରଘୁନାଥଙ୍କୁ ଯେ ବିଭା ଦେଲେ ମୋର ତାତ ।
ନଷ୍ଟନାରୀଙ୍କର ପ୍ରାୟେ ମୋତେ ତୁ ବୋଲନ୍ତୁଁ
ଏତେକ ନ ଜାଣିମା ପଣେ କି ପ୍ରଭୁ କହନ୍ତୁ ?
ତୋହ୍ମ ଶଶୁର ଜନକ, ମୁହିଁ ତ ନରେନ୍ଦ୍ରର ରାଣୀ
ଦୁଇ କୁଳେ ବିଶୁଦ୍ଧା ଜଗତେ ମୋତେ ଜାଣି ।
ଏବେ ଅବଗୁଣ ଯେଣୁ ମୋତେ କୋପ କରି
ହାନି ଲାଭ କଥାକୁ ତ ବିଚାର ନ କରି ।

ହେ ସ୍ୱାମୀ, ମୋହର ବୋଲ ଏବେ ତୁହି ଶୁଣ
ଆନ ନାରୀଙ୍କର ପ୍ରାୟେ ମୋତେ ତୁ ନ ମଣ ।"
ଶ୍ରୀରାମ ବୋଇଲେ ଯେ କଞ୍ଚିତ କୋପ କରି—
"ନାରୀଜାତଙ୍କୁ ବିଶ୍ୱାସ ଯିବା କେଉଁପରି ?
ନୁହଇ ମୁଁ କୁପୁରୁଷ ନ ନେବଇ ତୋତେ
ସତ୍ୟ କଥା କହୁଅଛି ମୁଁ ତୋହର ଅଗ୍ରତେ ।"
ଶୁଣି କୋପ କରିଣ ବୋଇଲେ ବଇଦେହୀ—
"ଆନ ନାରୀ ପରି ମୋତେ ନ ମଣ ଗୋସାଇଁ !
ତୁ ଏବେ ପରୀକ୍ଷା କରି ମନ ମଧ୍ୟେ ବୁଝ
ଇହଲୋକ ପରଲୋକ ଦୁଇ ଲୋକ ଶୁଝ ।
ତିନ ପୁର ଲୋକଙ୍କୁ ତୁ ଜଣପି ଗୋସାଇଁ,
ଜଳନ୍ତା ଅନଳେ ମୁହିଁ ପଶିବି ଝସାଇ ।
ହେ ଲକ୍ଷ୍ମଣ, ବେଗେ ଅଗ୍ନି ଆରୋପଣ କର
କିପାଇଁ ତୁମ୍ଭେ ମୋତେ ଯେ ଅବଗୁଣ ଧର ?
ଏ ମୋହର ପ୍ରାଣପତି ପ୍ରତେ ଯେତ୍ନେ ଯାଇ
ତାହା ମୁହିଁ କରିବି ଯେ କଥା ଥାଉ ରହି ।
କିପାଇଁ ଅଗ୍ନି ସଂଯୋଗ ନ କରୁ ଲକ୍ଷ୍ମଣ,
ଅଗ୍ନି ଜାଳିଦିଅ ମୁଁ ପଶିବି ଏହିକ୍ଷଣ ।"
ଶୁଣିଣ ସଉମିତ୍ରି ଶ୍ରୀରାମ ମୁଖ ଚାହିଁ
ଦୃଷ୍ଟି ଅନୁମତେ ଯେ ଶ୍ରୀରାମ ଦେଲେ କହି ।
ରଘୁନାଥ ସନମତ ଜାଣିଲା ଲକ୍ଷ୍ମଣ
ଥାଟ ପେଷି କାଠ ବୋହି ଆଣିଲେ ବହନ ।
ଯୋଖି ଅଗ୍ନିବାଣ ଯେ କାଢ଼ିଣ ଜାଳିଦେଲା
ପ୍ରଖର ଅନଳଗଣି ଜଳିଣ ଉଠିଲା ।

ବିଭୀଷଣ ଘରୁ ଘୃତ ଅଣାଇଲା ଧାଇଁ
ଜଳନ୍ତା ହୁତାଶନର ଉପରେ ଢାଳନ୍ତି ।
ବଳବାନ ହୋଇ ଅଗ୍ନି ଜଳିଲା ବହନ
ଉପରର ଯାଏ ଦୂର ହୋଇଲେ ସଇନ ।
ଦେଖିଣ ଜାନକୀର ପରମ ତୋଷ ଚିତ୍ତ
ପୂର୍ବମୁଖ ହୋଇଣ ବୋଲନ୍ତି ସେ ଏମନ୍ତ—
"ଶ୍ରୀରାମଙ୍କୁ ମନେ ଅନ୍ୟ ମୋହର ଥାଇ ଥାଇ
ହେ ହୁତାଶନ ଦେବତା, ପକା ମୋତେ ଦହି ।"
ଏସନେକ ବୋଲିଣ ପାଣିକ ଯୋଡ଼େ ପଣି
ଜଳନ୍ତା ହୁତାଶନରେ ବଇଦେହୀ ଝାସି ।
ଦେଖିଣ ହାହାକାର ସକଳ ଲୋକ କଲେ
ହାହାରେ ଜାନକୀ ପ୍ରାଣ ବାଞ୍ଛିବ ବୋଇଲେ ।
କିପାଇଁ ରଘୁନାଥ ଯେ କଲେ ପାପ କର୍ମ
ଜାଣିଲେ ସତେ ଲୋକଙ୍କୁ ଝିଙ୍ଗାସଇ ଧର୍ମ ।
ଯାହାର ନିମନ୍ତେ ଗୋ ଏଡ଼େକ କର୍ମ ହେଲା
ସେ ମହାସତୀକ ଅଗ୍ନି ମଧ୍ୟେ ପୋଡ଼ି ଦେଲା ।
ଋଷି ଅସୁରଙ୍କର ବୋବାଳି ଅପ୍ରମାଣ
ବୋଇଲେ ଏଡ଼େ ନିର୍ଦ୍ଦୟ ଅଟେ ରାମ ରାଣ ।
ଆମ୍ଭଙ୍କୁ ମାଣ୍ଡି ନ ଦେଲା ଅଗ୍ନି ସର୍ପ ଘଟ
କିପାଇଁ ଜାନକୀକି ସେ ଦେଲା ଏଡ଼େ କଷ୍ଟ ?
ମନ୍ଦୋଦରୀ ସହିତେ ଯେତେକ ନାରୀମାନେ
ଡରେ ଥରହର ଯେ ହେଲନ୍ତି ମନେ ମନେ ।
ଝୁରନ୍ତି ଶ୍ରୀରାମର ନାହିଁ ନା ଓପ୍ରୋଧ
କିପାଇଁ ସେ ରାବଣକୁ ନ କରିବ ବଧ ?
ଲଙ୍କା ରାକ୍ଷସ ରାକ୍ଷସୀ ରୋଦନ କରନ୍ତି
ଶ୍ରୀରାମଙ୍କୁ ମନେ ବଇରାଗ ସେ ଧରନ୍ତି ।

ଏଡ଼େ ନିର୍ଦ୍ଦୟ ହୋଇଲ କଉଶଲ୍ୟା-ସୁତ
ଏହା ପରା ପ୍ରିୟାକି ନ କଲ ସନମତ ।
ଋକ୍ଷ କପି କାହାନ୍ତି ଯେ କଲୁ ଏଡ଼େ ରଣ
ଏବେ ଦୁଃଖେ ପଡ଼ିବାର ହେଲା ଅକାରଣ ।
ହେ ରଘୁନାଥ, ଧଇଲୁ କିମ୍ପାଁ ପାପ ବୁଦ୍ଧି
ହୁତାଶନେ ଧ୍ୱଂସିଲୁ ଯୁବତୀ ରତ୍ନନିଧି ।
ଅଷ୍ଟ ସେନା ଯେ ପଞ୍ଚାଶ ଯୂଥପତି କାନ୍ଦି
ବସ୍ତ୍ରହିଁ ନ ସମ୍ଭାଳନ୍ତି କେଶହିଁ ନ ବାନ୍ଧି ।
ସୁଗ୍ରୀବ ବିଭୀଷଣ ଅଙ୍ଗଦ ହନୁମନ୍ତ
ନଳ ନୀଳ ସୁଷେଣ ତାରକ୍ଷ୍ୟ ଜାମ୍ବବନ୍ତ ।
ଓପ୍ରୋଧେ ଶ୍ରୀରାମଙ୍କୁ ଯେ ନ ବୋଲନ୍ତି କିଛୁ
ସବୁଙ୍କର ଦେହ ଯେ ଆଉଟି ହେଉଅଛୁ ।
ଗଳ ଗଳ ନୟନରୁ ବହେ ଅଶ୍ରୁଜଳ
ବୁକୁରେ କୋଡ଼ ହୁଅଇ ସୁମରି ବାଳ ।
ଶ୍ରୀରାମହିଁ ମନରୁ ମୂରୁଛା ନୁଆଣିଲେ
"ସୀତା ସୀତା" ବୋଲି ଆପେ କାନ୍ଦଣ ଉଠିଲେ ।
"ହା ହା ଜାନକୀ ଗୋ, ତୁହି ଜନକଦୁହିତା
କଥାର ଛଟକେ ହରାଇଲି ଆଗୋ ସୀତା !
କି ପାପବୁଦ୍ଧି ଯେ ପ୍ରସରିଲା ମୋର ଚିତ୍ତେ
କେବଳ ମୂର୍ଖପଣେ କହିଲି ଏହା ତୋତେ ।
ଏ ଜନ୍ମେ ସଖୀ ଗୋ, ତୋତେ ଦେଖିବି ଯେ ନ
ତୋହର ପରା ସୁନ୍ଦରୀ ପାଇବଇ କାହିଁ ?
କାହାର ବୋଲେ ମୁଁ ଏଡ଼େ ବଡ଼ କୃତ୍ୟ କଲି
ମୋ ପ୍ରାଣବଲ୍ଲଭାକି ଅଖଡ଼େ ହରାଇଲି !"
ଏସନେକ ବୋଲିଣ କାନ୍ଦନ୍ତି ରାମରାଣ
ରଘୁନାଥ କାନ୍ଦନ୍ତେ ଝୁରନ୍ତି ସୁରଗଣ ।

କେଉଁ ପ୍ରକାରେ ବୋଧ ହେବେ ରାମରାଜ୍ଞ
କେଉଁ ମତେ ଜାନକୀ ଦେବୀ ପ୍ରାଣ ରକ୍ଷ ।
ବ୍ରହ୍ମା ଆଦି ଦେବତାଏ ଏସନ ବିଚାରି
ରୁଦ୍ର ବୋଲନ୍ତି ଶୁଣ ଗୋ ଦେବୀ ଶାକମ୍ଭରୀ !
ଜଳନ୍ତା ଅଗ୍ନିରେ ଯେ ପଶିଲେ ଦେବୀ ସୀତା
ଚଉଦ ଭୁବନ ଲୋକେ ପାଉଛନ୍ତି ଚିନ୍ତା ।
ଶ୍ରୀରାମଙ୍କର ରୋଦନ କହିଲେ ନ ସରି
ଅଗ୍ନି କି ତେରଛି ଯେ ଗୃହାନ୍ତ ରାବଣାରି ।
ଧୂମର ଘାଏ ନୁଆରି ରୁଲେ ଦୃଷ୍ଟି ଦେଇ
ନଥ ବୋଲି ବେଢ଼ିଣ ବୁକୁରେ କୋଢ଼ ହୋଇ ।
ଏସନ ବେଳେ ଜଳନ୍ତା ହୁତାଶନ ମଧ୍ୟେ
ପୁରୁଷେକ ଦଶିଲ ଦେଖିଲେ ସୁରସିଦ୍ଧେ ।
ଅଗ୍ନିର ଭିତରୁ ସେହି ହୋଇଲା ବାହାର
ଅଗ୍ନି ପ୍ରାୟେକ ଯେ ଦେହ ଦିଶଇ ତାହାର ।
ସୀତାକୁ ଆଗ କରି ଶ୍ରୀରାମ ଆଗେ କହି
"ଏ ଯେ ଅପାପୀ ଅଟଇ ଜାଣ ବଇଦେହୀ ।"
ଏମନ୍ତ କୃତ୍ୟ ଦେଖି ଦେଖଣାହାରୀମାନେ
ଉବୁରା ଉବୁରି ହୋଇ ଧାମନ୍ତ ବହନେ ।
ହୁତାଶନକୁ ବେଢ଼ିଣ ଶୁଣନ୍ତ ସମ୍ବାଦ
ସମସ୍ତ ଲୋକେ ହୋଇଣ ଅଛନ୍ତ ପ୍ରବଧ ।
ଅଗ୍ନିର ଭିତରେ ଥାଇ ବୋଲନ୍ତ ପୁରୁଷ
"ହେ ଦେବ, ଜାନକୀର ଯେ କିଛି ନାହିଁ ଦୋଷ ।
ଏହା ମୁଁ ସମ୍ପୂର୍ଣ୍ଣରୁପେ କହୁଅଛି ତୋତେ
ମାନବଯୋନିରେ ତୁ ଯେ ନ ଚିହ୍ନିଲୁ ମୋତେ ।

ମୁହିଁ ତୋତେ ଜାଣଇ ତୁ ପରମ ପୁରୁଷ
ଅନନ୍ତ ମୂରତି ସ୍ୱୟଂ ବସ୍ତ୍ର ପୀତବାସ ।
ଏହି ସୀତା ଅଟଇ ପ୍ରତ୍ୟକ୍ଷେ କମଳକ୍ଷୀ
ନିଷ୍କଳଙ୍କ ପ୍ରତିମା ଏ ବସ୍ତ୍ର ପାଟରାଣୀ ।
ଦେବସ୍ତ୍ରୀମାନେ ନୁହନ୍ତି ଏହାଙ୍କୁ ସରି
ପରମ ବୈଷ୍ଣବୀ ଏହ ଜନକକୁମାରୀ ।
ଅଗ୍ନି ର ଶିଖାକୁ ଏହ ଲଙ୍ଘି ତ ପାରିବ
ଏ କଥା ଗୋଟିଏ ଯେ ସତ୍ୟ, ନ ଭାଳ ରାଘବ !
ସୀତା କମଳକ୍ଷୀ ଜାଣ ଅଗ୍ନି ର ସମାନ
ଏହା ଛୁଇଁବାକୁ କି ଭାଜନ ଦଶାନନ !
ମତ୍ତଗଜଗାମିନୀ ଏ କମଳଆନନୀ
ଦରିଦ୍ର ଜନଙ୍କର ଏ ଦୁଃଖବିନାଶିନୀ ।
ମୁହିଁ ହାଦେ ବୋଲୁଛି ଏହାର ପାପ ନାହିଁ
ପ୍ରତିଗ୍ରହ କର ଏ ସୀତାକୁ ତୋଷ ହୋଇ ।”
ସେ ପୁରୁଷ ବଚନେ ଶ୍ରୀରାମ ତୋଷ ହେଲେ
ଆସ ଆସ ଜାନକୀ ଗୋ ବୋଲିଣ ବୋଇଲେ ।
ସୀତାଙ୍କୁ ସମର୍ପି ସେ ପୁରୁଷ ଅନ୍ତର୍ଦ୍ଧାନେ
ସାଧୁ ସାଧୁ ବୋଇଲେ ଦେଖଣାହାରୀମାନେ ।
ଅଗ୍ନି ର ଭିତରୁ ସୀତା ହୋଇଲେ ବାହାର
ଶୁଦ୍ଧ ସୁବର୍ଣ୍ଣ ପ୍ରାୟେକ ରୂପ ଯେ ତାହାର ।
ନିଷ୍କଳଙ୍କ ଚନ୍ଦ୍ରମା ପ୍ରାୟେକ ମୁଖ ଦିଶି
ଶ୍ରୀରାମ ଯେ କୋଳ କରି ଘେନଗଲେ ଆସି ।

* *

# ଗୋପିକା ବିଳାପ

## ( ଜଗନ୍ନାଥ ଦାସ—ଭାଗବତ; ୧୦ମ ସ୍କନ୍ଧ )

ଗୋପୀଏ ବସି ବାଲିକୁଦେ  କାନ୍ଦନ୍ତି ଶୋକ ଗଦଗଦେ ।
ହେ ନାଥ ଯଶୋଦାକୁମର  ତୋ ଜନ୍ମ କାଳୁଁ ଗୋପପୁର ।
ଦରିଦ୍ର ଦୁଃଖୀ ତ ନ ଜାଣି  ଆମ୍ଭର ଘରେ କମଳାଣୀ ।
ଅନେକ ହୋଇଲା ସମ୍ପଦ  କେ କହୁ ଆମ୍ଭର ଆନନ୍ଦ ।
ଆମ୍ଭ ଜୀବନ ଅଟୁ ତୁହି  ତୋତହୁଁ ଅନ୍ୟ ଗତି ନାହିଁ ।
ତୋର ସମ୍ପଦ ହେଉ ଦୂର  ତୋ ମୁଖ ଚନ୍ଦ୍ର ଧନ ଦର ।
ମୁରଲୀନାଦେ ଅଣାଇଲୁ  ମୁଖ୍ଁ ଅମୃତ ରସ ଦେଲୁ ।
ଘୋର ଗହନ ବନେ ଥୋଇ  ଅନାଥ କରି ଗଲୁ କାହିଁ ?
ଏବେ ଦେଖାଅ ପଦ୍ମମୁଖ  ତାହେ ଜୀବନ ଆମ୍ଭ ରଖ ।
ତୋହର ଆଦେଶ ବ୍ରଜନାଶ  ଏ ବଂଶେ ତୋତେ ଅନୁସର ।
ଆମ୍ଭର ଆରତ ହନାଶ  କୋଟିଏ କାମ ପ୍ରାୟ ଦଶ ।
ତୋର ସେବକ ଦୁଃଖ ନାଶୁ  ଭରଷ ଚିତ୍ତ ଜନଙ୍କୁ ଆଶ୍ୱାସୁ ।
ତୋର ସେବକ ଆମ୍ଭେମାନେ  ତୋତେ ନ ଦେଖିଲେ ନୟନେ
ପଥ ନ ଦିଶେ ସନ୍ଧ୍ୟାକାଳେ  ବୁଡ଼ାଇ ଗଲୁ ଶୋକଜଳେ ।
ହେ ନାଥ କମଳଲୋଚନ  ଦେଖାଅ ନିର୍ମଳ ବଦନ ।
ତୋ ମୁଖକମଳର ତେଜେ  ପଦ୍ମ କୁମୁଦ ଲକ୍ଷ୍ମୀ ଗଞ୍ଜେ ।
ସେ ଧନେ କିଣିଲୁ ଆମ୍ଭନ୍ତ  ଏ ବନେ କଲୁ ତ ଅନାଥ ।
ସୁରତନାଥ ତୁ ଆମ୍ଭର  କିଣିଲା ଦାସୀ ଆମ୍ଭେ ତୋର ।
ଯାହାକୁ କିଣି ଧନ ଦେଇ  ସେ ତାକୁ ଛାଡ଼େ ପାପଗ୍ରାହୀ ।
ସେ କି ତୁଟଇ ତାରେ ବନ୍ଧ  ବେଦ ପୁରାଣେ ହୋଏ ବାଦ ।
ଅନେକ ଦୁଃଖୁ ଅଛୁ ରଖି  ଏବେ ତୁ କରୁ ନିରମାଖି ।
ବଜ୍ରା ଦଇତ ଅଘାସୁର  ଇନ୍ଦ୍ର ବରଷା ମହାଘୋର ।

ବନ ଅନଳ ଷଣ୍ଢ ମୁଖୁଁ ତୁ ନାଥ ରଖିଲୁ ଆମ୍ଭଙ୍କୁ ।
ତୋହର ପାଦ ଆଶ୍ରେ କରି ଜନ୍ମ ମରଣକୁ ନ ଡରି ।
ତୁ ନୋହୁ ଯଶୋଦାକୁମର ଜୀବନ ଅଟୁ ପ୍ରାଣୀଙ୍କର ।
ସକଳ ଜନ୍ତୁ ହୃଦେ ଥାଇ ଅନ୍ତର ଜାଣୁ ଭବଗ୍ରାହୀ ।
ତୋତେ ଚନ୍ଦ୍ରଲ ବେଦବର ନାଶିଲୁ ଅବଧର ଭର ।
ତେଣୁ ଯାଦବକୁଳେ ଜାତ ତୋହର ନାହିଁ ଆଦଅନ୍ତ ।
ହେ କୃଷ୍ଣ ବଂଶ ଚୂଡ଼ାମଣି ଆମ୍ଭର ଶିରେ ଦଅ ପାଣି ।
ତୋହର କର ବ୍ରହ୍ମସଶି ଶରଣଜନ ଭୟ ନାଶି ।
ପଦ୍ମହୁଁ ଅତି ସୁକୁମାର କମଳା ବରଅଛି ବର ।
ତୋହର ପାଦପଦ୍ମ ଦୁଇ ବନେ ଗୋରୁଙ୍କ ପଛେ ଥାଇ ।
ପ୍ରାଣୀଙ୍କ ଦେହୁଁ ପାପ ନାଶେ ଜଳଧିତନୟା ବିଶେଷେ ।
ସହସ୍ର ଫଣା କାଳୀୟର ସୁନ୍ଦର କଲ ଚିହ୍ନକର ।
ଆମ୍ଭର ହୃଦେ ତା ଲଗାଅ କାମ ଅନଳ ତୁ ଲିଭାଅ ।
ତୋହର ମଧୁର ବଚନ ହୃଦେ ଭାବନ୍ତି ମୁନିଜନ ।
ଆମ୍ଭେ ତୋହର ପରବାସୀ ମୂର୍ଚ୍ଛିତ ହୋଇଲୁଁ ମୁରାରି ।
ତୋର ଅଧରୁ ସୁଧା ଦେଇ ଜୀବନ ରଖ ଭବଗ୍ରାହୀ ।
ତୋର ଚରିତ ସୁଧାବାରି ଶ୍ରୁତି ଯୁଗଳେ ପାନ କରି ।
ଜନ୍ମ ମରଣ ତାପ ନାଶେ ଦୁରିତମାନ ଦେହୁଁ ଧ୍ୱଂସେ ।
ପରଜ କରେ ଶ୍ରୁତିପଥ ଶିବ ଜପଇ ଅବିରତ ।
ତେଣେ ଯେ ହୋଏ ଉନମତ୍ତ ସେ ନର ଚତୁର୍ବର୍ଗଦାତା ।
ତୋ ଦରହସିତ ବଦନ କୋମଳ ମଧୁର ବଚନ ।
ଧ୍ୟାନ ମଙ୍ଗଳ ତୋ ବିହାର ଏକାନ୍ତ କଥା ହୃଦେ ହାର ।
କପଟ ପ୍ରାୟ ତୋର ଚିତ ଆମ୍ଭର ମନ ଏ ଦହନ୍ତି ।
ତୁ ନାଥ ଗୋରୁଙ୍କର ମେଳେ କାନନେ ଯାଉ ଯେତେବେଳେ
କୋମଳ ପାଦପଦ୍ମ ସ୍ନହୁଁ ଆମ୍ଭର ହୃଦୟ ଦହଇ ।

କାଷ୍ଠ ପାଷାଣ ତୃଣ ଲାଗି ନ ପୁଣ ହୋଇ ଦୁଃଖଭାଗୀ ।
ଯେବେ ଲୋକନେ ଦେଖୁ ତାହା ତେବେ ଏସ ସ୍ଥିର ହୁଏ ହିଆ ।
ବନୁଁ ଯେ ଆସୁଁ ଦିନ ଅନ୍ତେ ବାହାର ହୋଇ ଦେଖୁ ପଥେ ।
କପାଳେ କୁଟିଳ କୁନ୍ତଳ ହୃଦେ ଲମ୍ବଇ ବନମାଳ ।
ଗୋରଜ ଦେଖି ଚାରୁଦେହେ ଆମ୍ଭ ଜୀବନ କାମ ଦହେ ।
ତୋର ଅଭୟ ପଦ୍ମପାଦ ଶରଣ ଜନଙ୍କ ସମ୍ପଦ ।
କମଳା ଦଣ୍ଡେ ନ ଛାଡ଼ଇ ଆପଦକାଳେ ଯାହା ଧ୍ୟାଇ ।
ଅନେକ ସୁଖ ପ୍ରସବଇ ରଖ ଆମ୍ଭଙ୍କୁ ହସ୍ତ ଦେଇ ।
ସୁରତପର୍ଣେ ବଳସ୍ୱାର ଶୋକ ବିନାଶୁ ପ୍ରାଣୀଙ୍କର ।
ସୁସ୍ୱରେ ବେଣୁନାଦ ପୂରେ ଜନ୍ମ ମରଣ ତାପ ହରେ ।
ଗୋରୁ ଚରାଇ ଯାଉ ବନେ ତୋତେ ନ ଦେଖିଲେ ନୟନେ
ନିମିଷେ ଯୁଗ ପ୍ରାୟ ମଣୁ ଘୁଣୁ ଗଉରବ ନ ଜାଣୁ ।
ତୁ ଯେତେବେଳେ ଗୋପେ ପଶୁ ପଥେ ମୁରଲୀନାଦ ଘୋଷୁ ।
କୁଟିଳ କୁନ୍ତଳ ବଦନ ଦେଖି ନ ଟଳଇ ନୟନ ।
ପ୍ରିତ ତନୟ ବନ୍ଧୁ ଛାଇ ଆମ୍ଭେ ଏଥିଲୁ ତୋର ପାଛଁ ।
ସୁସ୍ୱରେ ବାଇ ବେଣୁ ଗୀତ ଆମ୍ଭେ ହୋଇଲୁ ମୂର୍ଚ୍ଛିତ ।
ସବେ ଆଣିଲୁ ଘୋର ବନେ ଆମ୍ଭଙ୍କୁ ତେଜିଲୁ କେସନେ ।
ଏଡ଼େ ନିର୍ଦ୍ଦୟ ତୋ ଶରୀର ବିଶ୍ୱାସ ନାଶିଲୁ ଆମ୍ଭର ।
ଶୁଣି ତୋ ଏକାନ୍ତ ବଚନ ହୃଦୟୁ ଦହଇ ମଦନ ।
ଅଳପ ହାସ ମୁଖ ଦେଖି ପିଛୁଡ଼ି ନ ପାରୁ ଯେ ଆଖି ।
ତୋର ଶ୍ରୀମୁଖକୁ ଅନାଇ ଆମ୍ଭର ମନ ନ ରହଇ ।
ଆମ୍ଭ ଆରତ ଖଣ୍ଡିବାରେ ତୋହର ଜନ୍ମ ଗୋପପୁରେ ।
ସୁଫଳ କରଇ ସଂସାର ହେଲେ ଗଞ୍ଜଇ ତମ ଘୋର ।
ତୋ ପାଦୁଁ ଆନ ଗତି ନାହିଁ ଉପେକ୍ଷା ନ କର ଗୋସାଇଁ ।

* * * *

# ବାରମାସୀ କୋଇଲି

( ଶଙ୍କର ଦାସ )

ଅରେ ବାବୁ ସୂତଧାର ! କି ଦଣ୍ଡ ଦେଲା ତୋହର
କାଢି ନଉଣଲା ମୋ ଲକ୍ଷ୍ମୀ କେତେକେଥି ଅଦ୍ଭୁତ କେଉଁ ଶିଷ୍ଯ,
ଲୋ କୋଇଲି ।
ଏହୁ ମାର୍ଗଶିର ମାସ । କାକର ପଡ଼େ ବିଶେଷ
ଶୀତଳ ପବନ ବହେ ଘନ ଘନ ମୋ ସୁଖ କରିବ କିସ,
ଲୋ କୋଇଲି ।
ପୁଷ ମାସେ ବଡ଼ ଶୀତ । କଷ୍ଟ ହଏ ଅପ୍ରମିତ
ଛିନା ବସନରେ ବୃକ୍ଷ ବକଳରେ କି ଦୁଃଖ ନ ହେବ ଜାତ,
ଲୋ କୋଇଲି ।
ମାଘରେ ଚନ୍ଦ୍ର ଅଧିକ । ଗଣିବ ଦୁଃଖ-ଦାୟକ
ଅମୂଲ୍ୟ ସୁପାତ୍ର ଚେନ ରଘୁପତି ବୁଲଇ କାନନପାକ,
ଲୋ କୋଇଲି ।
ଫଗୁଣେ ଫଗୁ ଖେଳରେ । ମାତିଛନ୍ତି ଘରେ ଘରେ
ମୋ ଅଳୁଣୀ ଧନ ମୋଠୁ ହୋଇ ଭିନ୍ନ ଭସାଇଲା ଶୋକପୂରେ,
ଲୋ କୋଇଲି ।
ଚଇତ ମାସରେ ଖରା । ମାରସ କରଇ ଧରା
ଶରୀରରୁ ଝାଳ ବହେ ଅନର୍ଗଳ ପରାଣ ହୁଏ ଘାବରା,
ଲୋ କୋଇଲି ।
ବଇଶାଖ ଖରା ବୃଦ୍ଧି । ବାହାରକୁ ନୋହେ ଯାଇ,
କେଉଁ ବୃକ୍ଷମୂଳେ ଜୀବନ ବଞ୍ଚିଲେ ଥିବ ମୋର ପୁଅ ରହି,
ଲୋ କୋଇଲି ।

ଜ୍ୟେଷ୍ଠ ମୋ ଜ୍ୟେଷ୍ଠ ନନ୍ଦନ । ଜାନକୀ ସଙ୍ଗ ଲକ୍ଷ୍ମଣ
ନାନା ପତ୍ରଫଳ ଖୋଜ ବୁଲୁଥିବେ ବର୍ଷର ଏ ବଡ଼ମନ,
ଲୋ କୋଇଲି ।

ଅଷାଢ଼ ମାସରେ ମେଘ । ଗରଜଇ ଯେହ୍ନେ ବାଘ
ବେଳେ ବେଳେଁ ଦୃଶ୍ୟ ହୁଅଇଁ ଅଦୃଶ୍ୟ ଘୋଟିଯାଏ ଚଉଦଗ,
ଲୋ କୋଇଲି ।

ଦେଖ ଧାରା ଶିରାବଣ । ଜଳ ପଡ଼େ ଅନୁକ୍ଷଣ
ଘର ଘାଟ ନାହିଁ ମୋ ଦୁଃଖୀ ସଙ୍ଗାଳ କିରୁପେ କାଟିବ ଦିନ,
ଲୋ କୋଇଲି ।

ଭାଦ୍ରବ ହେଲେ ପ୍ରବେଶ । ସୁନମିଲି ଦଶଦଶ
ଅତି ସୁକୁମାରୀ ଜନକକୁମାରୀ ମନେ ଭାବୁଥିବ କିସ,
ଲୋ କୋଇଲି ।

ଆଶ୍ୱିନେ ଚନ୍ଦ୍ର କିରଣ । କରଇ ମନ ହରଣ
କେତେ ମତେ କେତେ ଉତ୍ସବ କରନ୍ତେ ଘରେ ଥିଲେ ରଘୁଗଣ,
ଲୋ କୋଇଲି ।

ଏ ମହା କାର୍ତ୍ତିକ ମାସ । ଭଣିଲେ ଶଙ୍କର ଦାସ
ସୀତା ସଙ୍ଗେ ଯେଣ ରଘୁକୁଳମଣି ଭୋଗ କଲେ ବାର ମାସ,
ଲୋ କୋଇଲି ।

 

## ରାଧାଙ୍କ ପ୍ରଳାପ

### ( ରହସ୍ୟମଞ୍ଜରୀ—ଦେବଦୁର୍ଲଭ ଦାସ )

୧୦ମ ଛାନ୍ଦ—ତାଳ ଝୁମ୍ପା, ଭୁଲାଭୁଣା ବାଣୀରେ ଗାଇବ ।

ରାଗ—ମହ୍ଲାର

ଚରଣ ଅରୁଣ ରାଜେ,
( ତହିଁ ) କନକ ନୂପୁର ସାଜେ,
କଟି କିଙ୍କିଣୀ ଘଣ୍ଟି ଠଣରଣ କଙ୍କଣ ଝଙ୍କ ବାଜେ ।
ଗୋ ସଖି, ତୁ ଯାଉ କନା,
କହ୍ନାଇ ପାଖକୁ ଯାଉ କିନା,
ରତନ ବସନ ହାର କଙ୍କଣ ଯାହା ମାଗୁ ତାହା ନେଉ କିନା ।୧।
ସଜଳ ଜଳଦ କାନ୍ତ,
ନୀଳମଣି ଜିଣି ଶାନ୍ତ,
ଅମଳ କମଳ ମୁଖ ମଞ୍ଜୁଳ ଅଳକି ଅଳକାପନ୍ତ
ଗୋ ଦୂତ, ତୁ ଯାଉ କିନା ... । ୨ ।
ଅରୁଣ ଅଧର ରାଜେ,
ମୁରଲୀ ମଧୁର ବାଜେ,
ନାସେ ମୋତିବର ଗଗନେ କି ଶୁକ୍ର ଅଧର ପରେ ବିରାଜେ
ଗୋ ସଖି, ତୁ ଯାଉ କିନା ... । ୩ ।
ଭାଲେ ଚନ୍ଦନର ବିନ୍ଦୁ
ବିନ୍ଧିତ ଜଳଦେ ଇନ୍ଦୁ
ମଣ୍ଡିତ କୁଣ୍ଡଳ ଗଣ୍ଡମଣ୍ଡଳ ଚଣ୍ଡ କିରଣ ନିନ୍ଦୁ,
ଗୋ ଦୂତ, ତୁ ଯାଉ କନା ... । ୪ ।
କୁଟିଳ କୁନ୍ତଳ ଚୂଳେ,
ରଞ୍ଜିତ ବିବିଧ ଫୁଲେ,

ବାଘେଁ ଝଲମଲ ମୟୂରପୁଚ୍ଛ ମତ୍ତ ମଧୁକର ଭୁଲେ,
ଗୋ ସଖି, ତୁ ଯାଉ କିନା ... । ୫ ।
ମୋତେ ସଜ କର ସଖି,
କହ୍ନାଇକି ଯିବ ଦେଖି
ମୁରଲୀ ବଜାଇ ମନ୍ଦ ମନ୍ଦ ଭଲ ଦୂରୁଁ ଠାରୁଥାଇଁ ଆଖି
ଗୋ ଦୂତି, ତୁ ଯାଉ କିନା ... । ୬ ।
ମୋର ଚରଣେ ଦଅ ପାହୁଡ଼
ବନେ କରୁଥିବ ଧାଉଡ଼,
ପାଦ ରୁଣୁ ଝୁଣୁ ଶବଦ ଶୁଣିଣ କହ୍ନାଇ ଆହୁଡ଼ ବାହୁଡ଼
ଗୋ ସଖି, ତୁ ଯାଉ କିନା ... । ୭ ।
ନେତ ପିନ୍ଧାଅ ମଣ୍ଡାପଡ଼ିଯା
କହ୍ନାଙ୍କି ଯିବ ଲୋଡ଼ିଯା
ଖଞ୍ଜି କରେ ଚୂଡ଼ ଗୁଞ୍ଜାର ବନ୍ଧ ସମନାଧ ଗରଗଡ଼ିଯା
ଗୋ ଦୂତି, ତୁ ଯାଉ କିନା ... । ୮ ।
କୁଶ ଦାମ ପରି ବଦ
(ମୋର) ବାହୁଟି ଉପରେ ବାନ୍ଧ,
ଶ୍ରବଣେ ଭର ମୋ ଝଲକ ଚନ୍ଦ ଫେର ତା ମୁକୁତା ବନ୍ଧ
ଗୋ ସଖି, ତୁ ଯାଉ କିନା ... । ୯ ।
(ମୋର) ମୁକୁତା ପାଞ୍ଚ ଗୋଟିଅ
(ଖଞ୍ଜିଦେ) ମୋର ନାସା ପୁଟିଅ
(ମୋର) କହ୍ନାଇ ପାଶକୁ ବାଜ ଯାଉଥିବ ଝମକ ଝମକ ଝୁଣ୍ଟିଅ
ଗୋ ସଖି, ତୁ ଯାଉ କିନା ... । ୧୦ ।
ଏତେ କହ୍ଦ କର ବାଳୀ
ମୋହେଣ ପଡ଼ିଲୁ ଢଳି

ଧାଇଁ ଧରି ସଖୀ ସ୍ୱେଦନ  କରନ୍ତି ଅଲଟ ଚାମର ଢାଳ
ଗୋ ଦୂତି, ତୁ ଯାଉ କିନା … । ୧୧ ।
ଗୋବିନ୍ଦ ଗୋବିନ୍ଦ ବାଦ୍ୟ
ଗଗନେ ଉଚ୍ଛୁଳେ ନାଦ
ଦେବ କହେ ପ୍ରଭୁ କେବେହେଁ ନୋହିବ ଗୋବିନ୍ଦ ଭାବ ବିଚ୍ଛେଦ ॥
ଇତି ଶ୍ରୀ ରହସ୍ୟମଞ୍ଜରୀ ଦଶମ ଛନ୍ଦେ,
ରାଧିକା ପ୍ରଳାପ ଗୋପୀ ବିଳାପ ବନ୍ଧେ
ଏକାଦଶ ଛନ୍ଦ ବର୍ଣ୍ଣନେ କେବଣ କେବଣ ପ୍ରସ୍ତାବ
କହିବାକୁ ଆଜ୍ଞା ହେଉ ଶ୍ରୀ ମୁଖ ପ୍ରଭୁ ଆପ । ୧୩ ।

* * *

# ଗୋପାଙ୍ଗନା ବିଳାପ

( ଦୀନକୃଷ୍ଣ ଦାସ—ରସକଲ୍ଲୋଳ; ୨୬ ଶ ଛାନ୍ଦ )

ପଦ୍ମପତ୍ର—କାଳିଆ ଧନ

ବାଟେର୍ ନ ଦେଲେ ଦରଶନ—ବୃତ୍ତେ

ରାଗ କାମୋଦ

କୃଷ୍ଣ କଂସନଗର          ଯିବା ଶୁଣି କାତର
ସକଳ କଳାକରମୁଖୀ,
କାରୁଣ୍ୟ ହୋଇ ଧୀରେ          କହନ୍ତି କୋମଳରେ
କଂକଣ ନୟନରେ ରଖି, ହେ କୃପାନିଧି ।
କେମନ୍ତେ ଛାଡ଼ିବୁ ତୁମ୍ଭଙ୍କୁ          କହ ଏ ବିଧୁର ଆମ୍ଭଙ୍କୁ
କରି ମନ୍ଦ ଛଳରେ          ହୃଦୟ-କମଳରେ
ଧଇଲ ଏମନ୍ତ ଦମ୍ଭକୁ ହେ । ୧ ।

କ୍ରୂର କୁସୁମଧନୁ          କ୍ଷଣ କରଇ ତନୁ
କାନନୁ ଆସିବା ସରିକି
କେମନ୍ତ କରି ଦେହ          ରଖିବ ସେ ଅଦେହ
ଗଲେ ମଥୁରା ନଗରୀକି, ହେ କୃପାନିଧି ।
ଭଲେ ଯେତେ ରୂପରେ ପ୍ରୀତି,          କରୁଛ ତେତିକି ଅନୀତି
କମଠ ପୃଷ୍ଠପ୍ରାୟ          ନ କର କୃପାମୟ
କୋମଳ ନକେତନ ସ୍ତୁତି ହେ । ୨ ।

କାନ୍ତା କାନ୍ତ ଅଭାବେ          କନ୍ଦର୍ପ ପରାଭବେ
କୃଶକୁ ଭଜଇ ବିକଳେ
କେବା ତାହା ନ ସହେ          କଳେବରକୁ ଦହେ
ପ୍ରବଳ ଜଳନ୍ତା ଅନଳେ, ହେ କୃପାନିଧି ।

କାହାକୁ କହିବୁ ଏ କଥା, କେବା ଖଣ୍ଡିବ ମନବ୍ୟଥା,
କୃପାଳୁ ହୋଇ ଯେବେ କୃପା ଗୁଡ଼ ଅଭାବେ
ତୁମ୍ଭେହିଁ ପୋଡିଲନ ମଥା ହେ । ୩ ।

କଲୁ ହିତଆଦର କୁଳଶୀଳ ବେଭାର—
ଖରେ ତୁମ୍ଭଙ୍କୁ ମନ ଦେଇ,
କାଲେ ହୋଇଲୁ ଏବେ ଚରଣ ବିନ୍ଦୁ ନାବେ
ଦେଲ ଲୋକ ପରାୟେ ହୋଇ, ହେ କୃପାନିଧି ।
କୁଳଶ ହୃଦୟ ତୁମ୍ଭର, କନକ ଉରଜ ଆମ୍ଭର
କେ ତାହା ପରଶରେ କଠୋର ଭାବ ଧରେ
ଏ କଥା କାହାକୁ ଗୋଚର ହେ । ୪ ।

କରୁଛ ତୁମ୍ଭେ ଗତ ରହିଛୁ ଆମ୍ଭ ଗୁପତ
କେହି କାହାକୁ ନୋହେ ଊଣା ।
କାକ ପୋଷିଲା ପିକ ପ୍ରାୟେ ଏ କଥା ଲୋକ
ମଧ୍ୟରେ ଯାଉଅଛି ଜଣା, ହେ କୃପାନିଧି ।
କାହାଗେ କହିବୁ ଗୁହାରି କଂସ ତ ଆମ୍ଭର ବଇରି
କ କହିବା ଅମିତ କୁଷି ରଖିବା ଭିତ୍ତି
କୁଷି ଯାଉଛି ଯେବେ ଚିର ହେ । ୫ ।

କଣ୍ଠରେ ଥିବା ମାଳା, କାଟି ଦେଉଛି ଗଳା,
କହିବାକୁ ଏ କଥା ଲାଜ,
କେତେ ସଂକଟୁଁ ରଖି ଏବେ ତାହା ଉପେକ୍ଷି
ଯିବାକୁ ହେଉଅଛ ସଜ, ହେ କୃପାନିଧି ।
କରେ ଲଗାଇ ବିଷ ବୃକ୍ଷ କାଟିବା କଥା ନୁହେଁ ମୁଖ୍ୟ
କଉଁ ନୀତି ନ ଜାଣ ବୋଲି ଏତେ ଦୂଷଣ
କଥାହିଁ ଭୂଷଣ କରୁଛ ହେ । ୬ ।

କି କରିଥିଲୁ ଚିହ୍ନେ କି କରୁଅଛୁ ସେହି
କି କରୁଛ ତୁମ୍ଭେ ପ୍ରତକ୍ଷେ
କର୍ମ ବାମ ବେଳକୁ ବିଧାତା ଅବଳକୁ
ବିଷ ଉପୁଜେ ସୁଧା-ବୃକ୍ଷେ, ହେ କୃପାନିଧି ।
କୃପଣ ଜନେ ଲକ୍ଷ୍ମୀ କହି କେବେହେଁ କାର୍ଯ୍ୟ ପାଇ ନାହିଁ
କେବଳ ମାତ୍ର ଯାହା ହୁଅଇ ଅନ୍ତର୍ଦାହ
ତେତେବେଳର ଫଳ ସେହି ହେ । ୭ ।

କେତେବେଳରେ ଆଖି ପିଞ୍ଜୁଡ଼ିବା ଉପେକ୍ଷି
କରୁଣା ବିଲୋକନ କରି
କେତେବେଳରେ କର— ଯୋଡ଼ି କହିଲେ ଶିର
ନୁଆଇଁ ନ ଦିଅ ଉତ୍ତର, ହେ କୃପାନିଧି ।
କରନ୍ତି ପ୍ରଭୁମାନେ ଯାହା କରି ନ ପାରେ ଆନ ତାହା
କେତେରୂପେ ମଣ୍ଡନ୍ତି କଞ୍ଚିତରେ ଦଣ୍ଡନ୍ତି
କହିବାକୁ ନ ଥାଇ ସାହା ହେ । ୮ ।

କରିଥିଲୁ କାମନା ସକଳ ଗୋପାଙ୍ଗନା
ତୁମ୍ଭେ ଗୋପୁରେ ଶୁଭେ ଥିବ ।
କଉତୁକ ହରଷ ରସେ ପାଦସାରସ
ସେବାରେ ଆମ୍ଭ ଦିନ ଯିବ, ହେ କୃପାନିଧି ।
କଲା ସେ କଥା ଆନ ବିଧି, କରୁଛ ତୁମ୍ଭେ ଏ ଅବଧି
କଳାନିଧିକି କରେ ଧରିବାକୁ ମନରେ
ବଞ୍ଛିଲେ କି ହୋଏ ସିଦ୍ଧି ହେ । ୯ ।

କେତେ କେତେ ବିପତ୍ତି— ମାନଙ୍କୁ କରିଗତ
ଯଶ ଚନ୍ଦ୍ର ଉଦେ କରିଛ ।

କିପାଁ ନବଘଣ-ଅନ୍ତ— ଗିରିରେ ତାହାର ଅନ୍ତ
କରିବା ବିସ୍ତର କରୁଛ, ହେ କୃପାନିଧି !
କାମ ଅନ୍ଧକାରେ ପକାଇ କୁକୀର୍ତ୍ତି-ପତାକା ଟେକାଇ
କଇତବ ଅନ୍ତର ସଙ୍ଗତରେ ବାହାର
ହୋଇଛ କେଉଁ ସୁଖ ପାଇ ହେ । ୧୦ ।
କଣ୍ଟ ଭକ୍ଷିଲ ଦଧି— ଫଳ ପରାଏ ବଧି
ଅମ୍ଭର ଆକାର ରଖିବ
କମଠ ନିଜ କୋଷ— କଲା ପ୍ରାୟ ସେ ବେଶ
କେବଳ ତୁମ୍ଭେ ନ ଦେଖିବ, ହେ କୃପାନିଧି ।
କର୍ମରେ ଅଛୁ ଏତେ ଯୋଗ କରିବୁ କେତେ ଦଶା ଭୋଗ
କୁରଙ୍ଗ ପକ୍ଷୀ ପ୍ରାୟେ ଝୁରିବାକୁ ଏ କାୟେ
କରାଇବ ତୁମ୍ଭ ବିୟୋଗ ହେ । ୧୧ ।
କଷ୍ଟୁ ତାରିବା ପାଇଁ ପ୍ରୀତି-ବୋଇତ ନେଇ
ତୁମ୍ଭ ସଙ୍ଗ-ସିନ୍ଧୁରେ ମେଲ
କୁଳ ଶୀଳ ବେଭାର ସବୁ ଏକ ପ୍ରକାର
ଅମ୍ଭର କରିଣ ଅଛାଳ, ହେ କୃପାନିଧି ।
କଛୁ କାଳ ବାଣିଜ୍ୟ କଲୁଁ କେତେ ସୁଖରେ ଦିନ ନେଲୁଁ
କଂସଦୂତ ବତାସ କଲା ତ ଏବେ ନାଶ
ଦେଖୁଁ ଦେଖୁଁ ଦୁଃଖକୁ ଗଲୁଁ ହେ । ୧୨ ।
କାହା ପାଶେ ରହିବୁ କାହାକୁ କି କହିବୁ
କେ ଜାଣିବ ଅମ୍ଭର ମନ
କି କି ହୋଇ ପ୍ରମାଦ ପଡ଼ିଗଲେ ବିଷାଦ
ହରି କେ ରଖିବ ଜୀବନ, ହେ କୃପାନିଧି ।
କହିବାର ଅଧିକ ସିନା, କାହିଁ କେତେ ନୋହିଛୁ ସେଛା,

କର୍ମ ଫାଟିଲା ବେଳେ        କଳ୍ପତରୁ ନ ଫଳେ
ସବୁ ତୁମ୍ଭ ଭିଆଣ ସିନା ହେ । ୧୩ ।
କର୍କଟ ଅଧ ନଳ        କଦଳୀ ଅଧ ଫଳ
ବେଳକୁ ନାଶକୁ ଭଜନ୍ତି ।
କୁଟିଳ ହେଲେ ବହି        ମହତ ପଣ୍ଡିତଙ୍କଁ
ଛବେନ ସେଣକୁ ତେଜନ୍ତି, ହେ କୃପାନିଧି ।
କାଳ ଘୋଟଇ ଯେତେବେଳେ  କାହାର କୃତ୍ୟ କେତେବେଳେ
କଲେ ଗତ ଆକାଶ—        ମଣ୍ଡଳ ବିହାୟସ
ପାଶେ ପଡ଼ନ୍ତି ମହିତଳେ ହେ । ୧୪ ।
କରି ଯାହା ଉପାୟେ        ମାୟୁରେ ପଢ଼ି କାୟେ
କେବଳ ଶ୍ରମ ମାତ୍ର ସାର,
କାଳ କରଇଁ ଯାହା        ଆନ ନୁହଇ ତାହା
ସମସ୍ତ ଅଧୀନ ତାହାର, ହେ କୃପାନିଧି ।
କରିଛି ତୁମ୍ଭଙ୍କୁ ଉଚାଟ        କରାଇବ କଂସକୁ ଭେଟ
କାହାର କି ହୋଇବ        କେଉଁ ଲୋକ କହିବ,
କାଳେ ସେ ହୋଇବ ପ୍ରକଟ ହେ । ୧୫ ।
କେତେବେଳେ ତରଙ୍ଗିଣୀ        ନରପତି ଶୃଙ୍ଗିଣୀ
ଖଳକୁ ନ ଯାଇ ବିଶ୍ୱାସ,
କି ସୁଖ ପାଇବାକୁ        କାଳସର୍ପ ମୁଖକୁ
କରୁଛ ଏମନ୍ତ ସାହସ, ହେ କୃପାନିଧି ।
କର ଜନ୍ମେ ଆମ୍ଭର ବୋଲ,    କହୁଛୁଁ ସିନା ତୁମ୍ଭ ଭଲ
କଳା ହେଲେ କୋକିଳ        ସରସ୍ୱତୀ ମଞ୍ଜୁଳ
କେବଳ ବରହଣୀ ଶଳ ହେ । ୧୬ ।

  

# ଗୋପୀ ସନ୍ଦେଶ ଚଉତିଶା

( ଦୀନକୃଷ୍ଣ ଦାସ )

ରାଗ—ପରଜ

କହନ୍ତି ସକଳ ଜଳାକରମୁଖୀ
ଗୋପୀମାନେ ଉଦ୍ଧବଙ୍କୁ,
କହିବଟି ତୁମ୍ଭ କଇତବ କୃପା—
ସିନ୍ଧୁ ନାମ ମାଧବଙ୍କୁ । ୧ ।
ଖଳ କଂସ ବୋଲେ ମଥୁରା ଯାଇ ସେ
ଆସିବାକୁ ବୋଲିଥିଲେ,
ଖମଣ୍ଡଳୁ ଖସି ପଡ଼ନ୍ତି ଖେଚର
ନଣ୍ଡ ପରାଏ ତ ହେଲେ । ୨ ।
ଗୋବର୍ଦ୍ଧନଧାରୀ— ଧର-ଧରଙ୍କୁ ତ
କହିବଟି ଏ ପ୍ରସଙ୍ଗ
ଗରୁ ଯଉବନ ଗଢ଼ିଲି ଥାଉ ତ
ପୁରୁଷଙ୍କ ପ୍ରୀତି ରଙ୍ଗ । ୩ ।
ଘେନ କହୁଥାନ୍ତି ନୂଆ ନୂଆ ଯାକି
କୃପଣକୁ ଲୋଭ ପ୍ରାୟେ
ଘୃଣାକ୍ଷରେ ପ୍ରେମ— ରସକୁ ପାଇଲେ
କରନ୍ତି ଆନ ଉପାୟେ । ୪ ।
ନାଗରୀମାନଙ୍କ କଟାକ୍ଷକୁ ଲକ୍ଷ୍ୟ
ନାଗରମାନଙ୍କ ବୋଲି
ନାଣ କରି ଧୈର୍ଯ୍ୟ ଦୁଃଖ ନ ଘେନନ୍ତି
ଦଥନ୍ତି ଅନଙ୍ଗ ହାଲି । ୫ ।

ଶୁଣୁଁ ଶୁଣୁଁ ନାଶ କୁହୁଡ଼ି ପରାୟେ
ଶତଧନ ଗୌରବ କଲେ .
ଚତୁର୍ବର୍ଗଦାତା ହୋଇ ତ ଆମ୍ଭଙ୍କୁ
ଚିନ୍ତା ଦାନ ଦେଇଗଲେ । ୬ ।
ଛଇଳ ପୀରତି ଭ୍ରମରଙ୍କ ପ୍ରୀତି
ଯୋଗ ହେବାଯାଏ ଥାଇ
ଛାଇ ପରାୟେ କ୍ଷଣକେ ଆନ ହୋଏ
ଆଉ ଲୋଡ଼ିଲେ ନ ପାଇ । ୭ ।
ଯାହା କହୁଥାନ୍ତି ଯୁବା ଯୁବତୀଙ୍କି
ରତ୍ନ ପଦ୍ମ ଲକ୍ଷ୍ୟ ଦେଇ
ଯଉବନ ଜନ୍ତୁ ଅନ୍ତର ହୋଇଲେ
କେହ୍ନେ କାହାକୁ ପଚାରନ୍ତି । ୮ ।
ଯେମନ୍ତେ ଆମ୍ଭ ଦୁଃଖ ଦେଖି ନ ଥିଲେ
ନେତ୍ର କପାଳ ପରାୟେ,
ଝସକେତୁ ଶରେ ଦହ୍ନ ହେଲୁ ଏବେ
ଦୟା ନ ବସିଲା ଦେହେ । ୯ ।
ନଦୀ ତଟ ଅଶ୍ରେ— କଲ୍ପତରୁ ଯେହ୍ନେ
ଅଳପକେ ନାଶ ଯାଇ
ନିର୍ଲକ୍ଷ ଗୋପୀ ସେହ୍ନମନ୍ତି ହୋଇଲୁ
ନନ୍ଦନନ୍ଦନଙ୍କୁ ପାଇ । ୧୦ ।
ଟେକ ମାତ୍ର ଅଛୁ ଗୋପୀନାଥ ବୋଲି
ଚନ୍ଦ୍ର କଇରବ ପ୍ରାୟେ
ଟିକାଏ ଅନ୍ତର ହୋଇଲେ ଏକା ସେ
କୁବୁଜାକୁ ଯୋଗ ହୁଏ । ୧୧ ।

ଠାଠିକ ଜଣ ଜଣକେ କହୁଥାନ୍ତି
ତୁମ୍ଭର ସିନା ଏ କାର୍ଯ୍ୟ,
ଠାବ କଲୁ ସବୁ ପ୍ରକାରେ ମନ୍ଦେଶ
ମାଳୀ ଜଳଘଟ ପ୍ରାୟେ । ୧୨ ।
ଡିମ୍ବ ପ୍ରତିପାଳ କାହିଁରେ ନୋହିଲୁ
କାକ ପ୍ରାୟେ ଶ୍ରମ ହେଲା,
ଡାଳେ ବସିଲୁ ରାବିଲା ଶୁଆ ପ୍ରାୟେ
ସେ ବଚନ କାହିଁ ଗଲା । ୧୩ ।
ଛମ କହି କହି ସବୁ ନାଶ କଲେ
ଏବେହେଁ ସେହି ପ୍ରସଙ୍ଗ
ଛାଲେ ଜାଣିଲୁ ତମିଆମାନଙ୍କର
ବୋଲି ସ୍ୱମୁଦ୍ର-ତରଙ୍ଗ । ୧୪ ।
ଇନ୍ଦ୍ରଜାଲିକ ପ୍ରାୟେ କେତେ ପ୍ରକାରେ
କେତେ କଥା ଦେଖାଇଲେ
ଆନ କର ସବୁ ପ୍ରକାରେ ସେ ମାୟା
ମନରେ ତ ରଖାଇଲେ । ୧୫ ।
ତଇଲ ବିନ୍ଦୁ ପାଣିରେ ପଡ଼ି ଯେହ୍ନେ
ବେଗେ ବିସ୍ତାର ଭଜଇ
ତାହାଙ୍କ ପହିଲ ପ୍ରୀତି ସେହିମତି
ପଛକୁ ଶୁଖିଲା ନଈ । ୧୬ ।
ଥିଲକୁ କିଛୁ ବାସନା ଫୁଲ ପ୍ରାୟେ
ତାଙ୍କ ଶ୍ରୀଅଙ୍ଗ ଛୁଇଁଲୁ
ଥୋକାଏ କାଳ ଯୋଗ ହୋଇ ଉଲଗି
ମାଳ ପରାୟେ ହୋଇଲୁ । ୧୭ ।

ଦଇବେ ପୂରୁଷଙ୍କ ପ୍ରୀତ ଭ୍ରମର
ପ୍ରାୟେ ପଡ଼କୁ ପ୍ରମାଦ
ଦଶ ଚଉର ଲୋକରେ ଲୋକ ହେବ
ବୋଲିବ ତାଙ୍କ ପ୍ରମାଦ । ୧୮ ।
ଧସ୍ୱଧରଙ୍କୁ - ଅଗସ୍ତି ଭଣ୍ଡି ଯାଇ
ଦକ୍ଷିଣେ ରହିଲା ପ୍ରାୟେ
ଧରଣୀଧର ସେହିମତି ଆମ୍ଭଙ୍କୁ
କରଣ ଗଲେ ଥୋକାଏ । ୧୯ ।
ନୂଆ ନୂଆ ଯାକ ନମ୍ରତା ହୁଅନ୍ତି
ଗୁଣ ଦେଲା ଧନୁ ପ୍ରାୟେ,
ନଡନୁ ଏମନ୍ତି ବେଗକୁ ପାଇଲେ
ଅଜୀର୍ଣ୍ଣ ଆନ ହୋଏ । ୨୦ ।
ପୂରୁଥାଇ ପୁର ପାଦପଦ୍ମ ଛନ୍ଦେ
ଯେସନ୍ତେ ବୈଷ୍ଣବଙ୍କ କାୟେ,
ପକାଇ ଦେଇ ପାଖକୁ ଅଣୁଥାଇ
ଖେଳିଲା ସାରଣୀ ପ୍ରାୟେ । ୨୧ ।
ଫାଟି ନ ଗଲା ହୃଦୟ ପୁଣି ବନ୍ଧ
କହିବାକୁ ଏହା କଲା,
ଫଳ ଯାଇ ଏବେ କୃଷକ ପରାୟେ
ଶ୍ରମ ମାତ୍ରକ ରହିଲା । ୨୨ ।
ବହୁତ ସଂକଟୁ ରକ୍ଷା କର ଶୋକ—
ସମୁଦ୍ରେ ମେଲିଲେ ଯହୁଁ,
ବାରଣ ସ୍ନାନ କଲା ପ୍ରାୟେ କଷ୍ଟହିଁ
କାରଣ ହୋଇଲା ତହୁଁ । ୨୩ ।

ଯୋଜନ ବନ୍ଦୁ ଯୋଗୀ ମନ ଯେମନ୍ତ
ସୁବେଶେ ନୁହଇ ତୋଷ,
ଘବଗ୍ରାହୀ ଭକ୍ତି ଗଲ ବନ୍ଦୁ ସବୁ
ଘବଯାକ ହେଲ ଭସ । ୨୪ ।
ମହାପ୍ରଭୁଙ୍କ ମୁଖୁ ଯା ଶୁଣିଅଛ
ବେଗେ କହ ଆମ୍ଭ ପାଶ,
ମହେଶ ଅଙ୍ଗ ଗରଳ ଜ୍ୱାଳା ବସୁ—
ଛଘ ଜଳେ ହୋଏ ନାଶ । ୨୫ ।
ଜୀବ ଥାଉଁ କାମ— ଅନଳ ଜଳନ୍ତୁଁ
ସଗର ପୁଅଙ୍କ ପ୍ରାୟେ,
ଜଗମୋହନ କୃଷ୍ଣ— ଗଙ୍ଗା ବାହାରେ
ନାହିଁ ଶୀତଳ ଉପାୟେ । ୨୬ ।
ରାଜୀବଲୋଚନ ଶ୍ରୀମୁଖଚନ୍ଦ୍ରମା
ଦେଖିବା ଭରସା ଥିଲ ,
ରଙ୍କ ରାଜା ହେବା କାମନା ପରାୟେ
ବଚନରେ ଯୋଗ ହେଲ । ୨୭ ।
ଲାବଣ୍ୟନିଧି ବନୁ ମନ ଉନ୍ମତ୍ତ
ବାତଚକ ପ୍ରାୟେ ହୋଇ,
ଲୋକ ଲଜକୁ ଦେହ ମାତ୍ର ଧରନ୍ତୁଁ
ଅଦେହ ଦଣ୍ଡକୁ ସହି । ୨୮ ।
ବରଜ ନାରୀଙ୍କ ବଚନ ଦେଖିଣ
ଉଦ୍ଧବ ପ୍ରବୋଧ କର,
ବୋଇଲେ ତୁମ୍ଭ ତାହାଙ୍କ ପ୍ରୀତି ନୀର
କ୍ଷୀରରୁ ଅଭେଦ ପର । ୨୯ ।

ସେହି ତ ତୁମ୍ଭଙ୍କୁ ହୃଦେ ଯେବଣ ଛନ୍ତି
ତୁମ୍ଭର ସେହି ସଦୃଶ
ସଲିଳ କାଚ ଘଟରେ ଥିଲା ପ୍ରାଏେ
ହୋଇ ସେ ଅଛୁ ପ୍ରକାଶ । ୩୦ ।
ଶୂନ୍ୟ ଦ୍ରବ୍ୟ ଯେସ ସବୁଠାରେ ସମାନ
ବନଫୁଲ ବାସ ପ୍ରାଏେ,
ସେହି ରୂପେ ଖୋଜ ଯେ ଯେଉଁ ସ୍ମରଇ
ତାହାର ସିନା ସେ ହୋଏ । ୩୧ ।
ଶାସ୍ତ୍ର ଶୁକ ପକ୍ଷୀ କାହାର ନୁହନ୍ତି
ଯେ ଯେଉଁ ପାଳେ ତାହାର
ଶ୍ୟାମସୁନ୍ଦର ତଉତ ସେହିମତ
ହୃଦନ୍ତର ଭାବନା କର । ୩୨ ।
ହସ୍ତକର ହସ୍ତ ହାଟକ ପ୍ରାଏେ ସେ
ହାତରେ ଥିଲେ ନ ଥାଇ
ହୃଦେ ଭାବୁଥାଅ ଭକତବନ୍ଧୁ ସେ
ଭାବିଲେ ତାହାଙ୍କୁ ପାଇ । ୩୩ ।
କ୍ଷୋଭ ଛଡ଼ାଇ ଗୋପୀଙ୍କି ବୋଧ କରି
ଉଦ୍ଧବ ମଥୁରା ଗଲେ,
କ୍ଷେମେ ଯାଇ କୃଷ୍ଣ ବୋଲେ ସଭାସଦ
ପ୍ରାଏେ କୃଷ୍ଣଙ୍କୁ କହିଲେ । ୩୪ ।

## ବିରହ ବର୍ଣ୍ଣନା

## [ଲୋକନାଥ ବିଦ୍ୟାଧର–ପଦ୍ମାବତୀ ପରିଣୟ, (ଅପ୍ରକାଶିତ)]

### ୭ମ ଛାନ୍ଦ ।

ରାଗ—ବରାଡ଼ି, ଅଷାଢ଼ ଶୁକ୍ଳବାଣୀ

❋ ❋ ❋ ❋

ତେଣେ ଯେ କୁମର କୁଞ୍ଜର ଗଲ୍‌
ବସା ଆବାସରେ ପ୍ରବେଶ ହେଲ୍‌
ମଧୁକର କର ଧରି ରହରେ
ବସି ଶୟନ ବଧୂ ବିରହରେ
କହେ ଶୁଣ ସଖା
ବାଲା ଗାବେ ମୋ ନେତ୍ର ହେଲା ଲେଖା !
ତା ବିନା ମୋତେ ନ ରୁଚଇ ଅନ୍ନ
ଦିନ ଚଳିକ କୋଟି କଲପ ସମାନ
ଶୟନ ସଦନ ହୋଇଲା କାରା,
ପ୍ରାଣ ପ୍ରୟାଣକୁ କରଛୁ ତୋରା
ପଞ୍ଚକାଣ୍ଡ କାଣ୍ଡ
ଗୃଣ୍ଡେ ମୋ ପିଣ୍ଡ କରେ ଖଣ୍ଡ ଖଣ୍ଡ ।
ସୁସ୍ଥ ଯେ ହେଉ ନାହିଁ ମୋର ଦେହ,
ଏଥକୁ କି ଉପାୟ ଅଛୁ କହ,

ଏ ଦୁଃଖରୁ ବିଧୁମୁଖୀ ବାହାରେ
ଆନ ରଖନ୍ତା ନାହିଁ ସଂସାରରେ
ଏବେ କି କହିବା,
ତାକୁ ସୁମରି ସୁମରି ମରିବା ।
ବାଳା ସୁମରଣେ ଗଲେ ପରାଣ
ଜନମ ହେବା ହୋଇବା କାରଣ
ସରି ହୋଇ ନ ରହିବ ନ ଯିବ
ଏ ସିନା ବିପଦ ପଦ ହୋଇବ
ଜୀବ ଥିବା କାର୍ଯ୍ୟ
କଦା ବା ଦେଖି ସଖୀ ମୁଖାମ୍ବୁଦ ।
ହାହା ସେ ବାଳା ଖଞ୍ଜନଲୋଚନା
ବସନ୍ତକୋକିଳକଳବଚନା
ପ୍ରଣୟ ପ୍ରପୂର୍ଣ୍ଣ ଇକ୍ଷଣ କୋଣେ
ଭେରଛେ ଚେକ ଅନାଇଲା କ୍ଷଣେ
ଯାହା ହେଲା ମନ
ତହିଁକି ସାକ୍ଷ୍ୟ ଏ ମୀନକେତନ ।
ଯେତେ କାଳ ଥାଏ ଥିବ ଏ ଜୀବ
ସେ ଗୃହିବା ଭାବ ମନୁ ନ ଯିବ
ବାଳା ଲୀଳା ଡୋଳା ଇନ୍ଦ୍ରଜାଲିକ
ମୋତେ କହୁଁ କହୁଁ କଲା କୁହୁକ
ତା ରଙ୍ଗ ଅପାଙ୍ଗ—
ତରଙ୍ଗ ଯୋଗୀ ଯୋଗ କରେ ଭଙ୍ଗ ।
ରସିକା ସାରସ ସର ସଦୃଶ୍ୟ
କି କରି ବୋଲିବା ଶର ସଦୃଶ୍ୟ

ପରସ୍ପର ସେବା ଗାଢେ ଭେଦଇ
ଏ ଲୋକଙ୍କ ମାଢେ ମର୍ମ ଛେଦଇ
ସେ ନ ଭେଦେ ମର୍ମେ
ଏ କର୍ମେ ଥିଲେ ମଗ୍ନ ହୋଏ ମର୍ମେ ।
କିପରି ଅପାଙ୍ଗେ ପ୍ରଣାମ କଲୁ–
ଅନନ୍ତ ପ୍ରୀତରେ ସ୍ୱୀତ କହଲୁ
ତାର କହବା ଶୁଣିବା ଅଭବ
ଲବ ତ୍ରିଭୁବନେ କେବା ପାଇବ
ତା ପିଛଡ଼ା ପାତ
ଡାକିଲୁ ପ୍ରାଣେ ହୁଅଇ ପ୍ରତୀତ ।
ଏଣୀ-ଈକ୍ଷଣୀ ରେ, କେଣିକି ଗଲୁ
ମୋହିତ ଚରଣ ବାଣେକୁ ଦେଲୁ
ପ୍ରଣୟଧନରେ କିଣି ଯାହାକୁ
ଏତେ ଅଣହେଲା କରି ତାହାକୁ
ହା ହା ପଦ୍ମାବତୀ
ତୋ ବିନା ନାହିଁ ମୋର ଆନ ଗତି ।

❊ ❊

## ପ୍ରଭାତ ବର୍ଣ୍ଣନା

### [ଲୋକନାଥ ବିଦ୍ୟାଧର—ପଦ୍ମାବତୀ ପରିଣୟ (ଅପ୍ରକାଶିତ)]

### ୧୧ଶ ଛାନ୍ଦ ।

ଏଥୁ ଅନ୍ତେ ଶୁଣ ରସ, ନିଶା ହେଲା ଅବଶେଷ
ହୋଇଲା ପ୍ରକାଶ ଦଶ, ତମ ବିନାଶ ଯେ । ୧ ।
ଉଦିତ ଅମ୍ବର ଭାନ୍ତ, ଉଡ୍ରିତ ଅମ୍ବର ଧ୍ୱାନ୍ତ
ପିକାଳୀ ପଞ୍ଚମସ୍ୱର, କଲେ ବିସ୍ତାର ଯେ । ୨ ।
ଜରସା ଯୋଷିତ ପରି, ଜ୍ୟୋତିହୀନ ପ୍ରାଣ ତାରି
କୁମୁଦ ମୁଦ ମୁଞ୍ଚିଲେ, ମୁଦ୍ଧ ହୋଇଲେ ଯେ । ୩ ।
ପ୍ରଦୀପ ହେଲା ପାଣ୍ଡୁର, ତୁଷାର ହୋଇଲା ହାର
ତିକ୍ତ ହୋଇଲା ତାମ୍ବୂଲ, ଧନ୍ୟ ଏକାଳ ଯେ । ୪ ।
ଦ୍ୱିଜରାଜଙ୍କୁ ବାରୁଣୀ, ଶଙ୍କା କରାଇଲା ଆଣି,
ତେଣୁ ଅମ୍ବର ତେଜିଲେ, ଗୋଚରୁ ଗଲେ ଯେ । ୫ ।
ସ୍ଖଳନ ହେଲା ଗଗନୁ, ପାଣ୍ଡୁର ହୋଇ ଶୋଭନ,
ମିତ୍ର ଅନୁଗତ ହେଲେ, ନ ଅନାଇଲେ ଯେ । ୬ ।
ଏହା ଦେଖି ଲଜ୍ଜା ଲଭି, ତାର ରଜନୀବଲ୍ଲଭି,
ଦଇବ ହତ ଜାଣିଲା, ସେ ସଙ୍ଗେ ଗଲା କି । ୭ ।
ଉଷା ଯୋଷା ଏହା ଦେଖି, ସଖୀ ସବୁଁ ହୋଇ ଦୁଃଖୀ
ଅନେକ କାକ ଡାକରେ, ରୋଦନ କରେ କି । ୮ ।
ନ ସହି ସେହି ଦୁଃଖିତ, ସିତକାର କଲା ହତ
ହତ ହୋଇଲେ କି ଗଲା, ପ୍ରୀତି ରଖିଲା ସେ । ୯ ।

ଜାଣି ତାହା ତାମରସ, ପ୍ରକାଶିଲା ଉପହାସ
ଛମେ ସୁମୁଖୀବଦନ, ସମ ଶୋଭନ ସେ । ୧୦ ।
ମଦଗନ୍ଧ ଶୀତଗୁଣ, ବନ୍ଧ ବନ୍ଧେ ସମୀରଣ
ପାଇ ପ୍ରକାଶ ସୁମନ, ଭୃଙ୍ଗ ପ୍ରସୂନ ଯେ । ୧୧ ।
ଠାବକୁ ଠାବ ବିକଟ, କୁକ୍କୁଟ ରଟ ପ୍ରକଟ
କଉଶିକେ ଦେଇ ଶୋକ, ହରଷ କୋକ ଯେ ।୧୨।
ଦେବାଳୟ ତୂର୍ଯ୍ୟ ପୂର୍ତ୍ତି, ଶଙ୍ଖ ସ୍ୱନେ ପରିପୂର୍ତ୍ତି
ବେଳକୁ ବେଳ ବିମଳ, ହୋୟେ ପ୍ରବଳ ଯେ ।୧୩।
ଉଦେ ହୁଅନ୍ତେ ଅରୁଣ, ହର ହର ହର ରଣ
ଉଦେ ଶିଖଣ୍ଡି ଶିଖର, ଶିଖୀ ଆକାର ଯେ ।୧୪।
କି ପଲ୍ଲବ ପଲ୍ଲବିତ, ବନ୍ଧୂଦତ କି ପୁଷ୍ପିତ
କିଂଶୁକ କୁସୁମବତ୍, କଇଁ କି ସ୍ୱତ କି ।୧୫।
ଫୁଟ ପାଟଳ ପଟଳ, ନିକୁଞ୍ଜ ଗୁଞ୍ଜ ପ୍ରଫୁଲ୍ଲ
ସୁନ୍ଦର ମନ୍ଦାର କିବା, ବିକର ଦବା ଯେ ।୧୬।
କୋକନଦ କି ପ୍ରକା[illegible] ବିକଚ କି ସୁମନସ
ରଙ୍ଗଣୀ ଶ୍ରେଣୀ ସ୍ତବକ, କି କୁରୁବକ ଯେ ।୧୭।
କିବା ପକ୍ୱ ବିମ୍ବଫଳ, ରଙ୍ଗ ନାରଙ୍ଗ ସଙ୍କୁଳ
ଦିଶେ ମହାକାଳ ଫଳ, କି ମହାଫଳ ସେ ।୧୮।
ଯେଣୁ ଉଦ୍ୟାନ ସମାନ, ପ୍ରାଚୀ ଗଗନ ଶୋଭନ
ଅରୁଣ ଅମ୍ବର ଯେନ, କି ମହା ମୁନି ଯେ ।୧୯।
ଇନ୍ଦ୍ରଗୋପ ଆଚ୍ଛାଦିତ, ବରଷା ରସ ସଂଜାତ
ବହୁତ ଲୋହିତଭର, କିରଣାକ୍ଷୀର ଯେ ।୨୦।
ଅନ୍ଧାରକୁ ଧର ପବି, ଆଲୋକ ପାବକ ହବି,
ନବୀନ ଉଦୟ ରବି, ହୁପଞ୍ଚ ଛବି ସେ ।୨୧।

ପ୍ରାଚୀ ମୁଖଶ୍ରୀ ସୁନ୍ଦର, ସିନ୍ଦୂର ବିନ୍ଦୁ ସୋଦର,
କି ନଭ ନାଶ୍ରି ମାଣିକ୍ୟ, ଏକା ଭାଟଙ୍କ ସେ ।୨୨।
କି ଦେବତା ଦଇତାଙ୍କ, କ୍ରୀଡ଼ା ବିଦ୍ରୁମ କନ୍ଦୁକ,
ସ୍ୱର୍ଗ ଅଂନୁରାଗ ରୂଣ୍ଡ, କି ତାମ୍ର ଖଣ୍ଡ ଯେ ।୨୩।
ହୋଇ ଏମନ୍ତ ଅରୁଣ, ଉଦେ ହୋଅନ୍ତେ ଅରୁଣ,
କଳଙ୍କ ଚଳିଂକ ଲୋଚନ, ଶୋକ ମୋଚନ ସେଂ ।୨୪।

* * * *

# ନାୟକର ବିନୟ ପତ୍ର

## ( ଉପେନ୍ଦ୍ର ଭଞ୍ଜ—ପ୍ରେମସୁଧାନିଧି, ୧୯ଶ ଛାନ୍ଦ )

[ ମହାକବି ଉପେନ୍ଦ୍ର ଭଞ୍ଜଙ୍କର "ପ୍ରେମସୁଧାନିଧି" ଏକ ଉତ୍କୃଷ୍ଟ କାବ୍ୟ । ଭଞ୍ଜଙ୍କର କୋଟିବ୍ରହ୍ମାଣ୍ଡ ସୁନ୍ଦରୀ,–ବୈଦେହୀଶବିଳାସ ପ୍ରଭୃତି କାବ୍ୟମାନଙ୍କ ପରି ଏହି କାବ୍ୟଟିରେ ଭାଷାର କ୍ଲିଷ୍ଟତା ବେଶି ପରିମାଣରେ ଦେଖାଯାଏ ନାହିଁ । ଏହି ଗ୍ରନ୍ଥଟିରେ ଖୁବ୍ ସରଳ ମର୍ମସ୍ପର୍ଶୀ ଭାଷାରେ ହୃଦୟର ଭାବ କିପରି ଭାବରେ ପ୍ରକାଶ କରାଯାଇପାରେ, ତାହାର ଦୃଷ୍ଟାନ୍ତ ନିଦର୍ଶନ କରି ଦେଖାଇ ଯାଇଛନ୍ତି । କବିତା ହିସାବରେ ଏହି ଗ୍ରନ୍ଥଟିର ସ୍ଥାନ ଖୁବ୍ ଉଚ୍ଚ । ଶକ୍ତିଶାଳୀ କବି କୋଟିବ୍ରହ୍ମାଣ୍ଡସୁନ୍ଦରୀ, ବୈଦେହୀଶବିଳାସ ପରି ପାଣ୍ଡିତ୍ୟପୂର୍ଣ୍ଣ ଓ କ୍ଲିଷ୍ଟଭାଷାବହୁଳ କାବ୍ୟ ଏବଂ ପ୍ରେମସୁଧାନିଧି ପରି ସହଜ ସରଳ ଭାଷାର କାବ୍ୟ ମଧ୍ୟ ଲେଖିପାରନ୍ତି । ]

ନିର୍ମଳ ଚନ୍ଦ୍ର ମଣ୍ଡଳ ଶରଦେ ବିରାଜ
ବଦନେ ଯଥା ଦର୍ପକ ଦର୍ପଣେ ଥିଲେ ମାଜ
ଗୃହେଁ କୁମର କାତର,
ଲେଖି ଆରମ୍ଭିଲା ବସି ବିନୟ ପତର ।୧।
ଜାନକୀବଲ୍ଲଭ ପଦ୍ମପାଦେ ଶିର ଥାଉ
ରାଜସୁତା ପ୍ରୀତି-କଉଶଳାକୁ ଶିକ୍ଷାଉ;
ଏବେ ମରୁଅଛି ଝୁରି,
ଦରିଦ୍ର ରତନ ପାଇ ହରାଇଲା ପରି ।୨।
ତୁ ମୋ ପ୍ରତିଚକ୍ଷୁ ଯେଣୁ ହୋଇଛୁ ଅନ୍ତର,
ଦିଶୁ ନାହିଁ କିଛି କାହିଁ ଆନ ପ୍ରତିକାର,

ନୂଆ ଅଙ୍କ ପ୍ରାପ୍ତ ହୋଇ,
ଅନୁକ୍ଷଣେ ଆକୁଳ ବଢ଼ୁଛି ପ୍ରାଣସନ୍ଧି । ୩ ।

ଦୂରେ ଥିଲେ ପାଶେ ଅଛୁ ଏହା ଥିବୁ ଘେନ,
କେତେ ଦୂରେ ଚନ୍ଦ୍ର କେତେ ଦୂରେ କୁମୁଦମୀ
ପ୍ରୀତି ଅଭେଦ ତାଙ୍କର,
ଯେତେ ଦୂରେ ଥିଲେ ଯେ ଯାହାର ସେ ତାହାର । ୪ ।

ଯେତେ ଦୂରେ ପଦ ପଡ଼ିଥିଲେ ରେ ନଗୀନା,
ଶଙ୍କା କି ନୁହଇ ଆନ ବୃକ୍ଷ ନାମ ବନା,
ବନ୍ଧୁ, ତେମନ୍ତ ମୁଁ ତୋର,
ସବୁଠାରେ କୁହାଉଛୁ ସୁନ୍ଦରୀ କୋସ୍ତ୍ରର । ୫ ।

ଦ୍ୱେଷଣେ ଅନାଇଲେ ଇନ୍ଦ୍ରଜାଲ ପ୍ରାୟେ ଦିଶୁ,
ମୁକୁର ବର୍ମ୍ମ ପରାୟେ ପାଶକୁ ନ ଆସୁ,
ଏତେ ହଠ କାହିଁ ପାଇଁ,
ମୋହ ଜାଣିବାରେ ମୁଁ ତ ଦୋଷ କର ନାହିଁ । ୬ ।

* * * *

ବିଦଗଧ ଶାମୁକ୍ତରେ ଜଳ ଦେଲା ପ୍ରାୟେ,
ସନ୍ତାପିତ ହେଉଛୁ ବରହ ଯୋଗୁଁ କାୟେ
ଚନ୍ଦନାଦ ଉପଚାର,
ହେଉଛୁ ତପତ ଲୋହ ଜମ୍ବାଳ ପ୍ରକାର । ୭ ।

ବରହକୁ ଉପଚାର ମାନ ମନୋହାରୀ
ପଲ୍ଲବ ଶଯ୍ୟାଦ ଯେତେ ବିଅର୍ଥରେ କରି,
ଏବେ ଅନୁଭବ ହେଲା,
ଗ୍ରହରେ ମଙ୍ଗଳ ପଦ ଯେମନ୍ତ ରହିଲା । ୮ ।

ବୁଡ଼ି ନଦୀ ତଟତରୁ ପରାୟେ ଜୀବନ,
ସନ୍ଦେହ ପଡ଼ନ୍ତି ଏଥୁଁ ତରିବି କେମନ,
ରାହୁ ଦଶା ପ୍ରାୟେ ମୋର,
ସୁଧା ପାନ ଉତ୍ତାରୁ ଛେଦନ ହେଲା ଶିର । ୯ ।
ଚନ୍ଦ୍ରକୁ ଚକୋର ଜଳଧରକୁ ଚାତକ
ପ୍ରାୟେ ତୋତେ ମୁଁ କରଥାଇ ଆଶା ଅନେକ
ଧାତି ନଷ୍ଟକାର ପରି,
ଦେଖାଇ ତ ହରି ନେଲୁ କନକ ଗଉଣୀ । ୧୦ ।
ସପନ ସଂପତ୍ତି ପ୍ରାୟେ ହେଲୁ ତୋ ସଙ୍ଗତ,
କ କରବ ଧ୍ରୁଯତମା ରସିକା ଯୁବତୀ
ଚନ୍ଦ୍ର କଣି ପ୍ରାୟେ ହୋଇ
ଏ ବରଷା କାହିଁ ଥିଲା ତୋହ ମୋହ ପାଇଁ । ୧୧ ।
ବାହାର ଅତି କଠିନ ଭିତର ସରସ
ନାଗରୀ ହୃଦୟ ନାରକେଳର ସଦୃଶ
ଅଲଙ୍ଗନେ କୃପାବଶେ,
ଜାଣିଥିଲି ଅନ ହେଲା ବଚ୍ଛେଦୁଁ ଏବେ ସେ । ୧୨ ।
ଏତେ କାଳେ କଲୁ ନାହିଁ ପଦିକା ପ୍ରଦାନ
ହୁତ ପେଷି ଥରେ ହେଲେ ନ ସଙ୍କୋଚୁ ଧନ,
ସହ, ସେହ ହୃଦ ତୋର,
ରସାଳ ପରାୟେ କି ହୋଇଲା ରାମାବର । ୧୩ ।
ଛାଇ ପ୍ରାୟେ ପାଶେ ଲଗିଥାଇ ଅନୁକ୍ଷଣେ,
ଆଜ୍ଞାକାରୀ ପ୍ରାୟେ ପୁଣି ତୋ ଅନୁସରଣେ,
ମାରକ୍ଷୀର ପ୍ରାୟେ ପ୍ରୀତି,
କାଦମ୍ବ ପରାୟେ ହେଲା ବଚ୍ଛେଦ ବପତ୍ତି । ୧୪ ।

ଭାରତୀ ପରାୟେ ତୁ ଗୁଣବତୀ ଯୁବତୀ
ଅଧିକ କିସ ଲେଖିବ ଜଣାଣ ବଳତି,
ଅପରାଧୀ ହେଲେ ଦାସ,
ନକରେ ପାଶକୁ ଯିବ କ୍ଷମା କର ଦୋଷ । ୧୫ ।

*　　*　　*

# ଶ୍ରୀରାମଙ୍କ ଜାହ୍ନବୀ ପାର ହେବା

( ଉପେନ୍ଦ୍ର ଭଞ୍ଜ—ବୈଦେହୀଶବିଳାସ ୯ ମ ଛାନ୍ଦ )

ରାଗ—ଶ୍ରୀ

ବତଳକୁ ଅନୁଙ୍ଗନ କର ଜାହ୍ନବୀ ଶୋଭନ
ହର୍ବେ ସୁର ବର ଚାପ ଗୁରୁ ଧାରା ସେ
ବହେ ମକରକେତନ ଉଚ୍ଛନ୍ନ ରତି ସମାନ
ପୂରିତ ହୋଇଛୁ ପୁଣି ଅଶେଷ ରସେ,
ବଦ୍ୟ ହୈମବତୀ ପଦରେ,
ବଷକଣ୍ଠ ତୋଷ ଦାଣ ବେନ ମତରେ । ୧ ।
ବଷ୍ଣୁପଦୀ ବିଷ୍ଣୁପଦ ଇକାର·ଭେଦ ଶବଦ
ତରଣୀ ଗତାଗତ ତହିଁରେ ଉଚିତ
ବିଶାରଦ ସେ ସାମନ୍ତ ମତରେ ଦାସ ସେବିତ
ତାକୁ ନ ଶୁଣନ୍ତେ ରଘୁନାଥ କଥିତ,
ବିଷଧର ପ୍ରାୟ କି ରୁଦ୍ର
ବେଳେ ନେଇ ତାଳ ଶୁଣ ଉଦାର ନୋହି । ୨ ।
ବଧିର ନୁହଇ ବୀର ବୋଇଲା ଚଣ୍ଡୁ ଧୀବର
ଶୁଣିଲିଣି ପଥରେ ପଥର ଅବଳା,
ବାଲ୍ଲ ପଦ୍ମ ତୋ ଚରଣୁ ଆଶଙ୍କା ଉପୁଜେ ଏଣୁ
ନଉକା ନାୟିକା ହେଲେ ବୁଡ଼ିବ ଭେଳା
ବୃତ୍ତି ଏ ମୋ ପୋଷେ କୁଟୁମ୍ବ
ବସାଇ ନ ଦେବି ପାଦ ନ ଧୋଇ ନାବ । ୩ ।
ବଢ଼ାଇ ଦେଲେ ପୟର ସ୍ୱବଗ୍ରାହୀ ରଘୁବୀର
ପୟରେ ଖାଳିତ କରି ବସନେ ପୋଛୁ

ବ୍ରହ୍ମାରେ ଧୌତ ଯେ ପଦ ନୋହିଛୁ ଶିବ ବିଷାଦ
ନ ପାଇ ଚରଣାମୃତ ପାନକୁ ଇଚ୍ଛି
ବିଜ୍ଞାନୀ କୈବର୍ତ୍ତ ଧୋଇଲା,
ବିଶ୍ୱେ ପତିତପାବନ ନାମ ରହିଲା । ୪ ।
ବିଞ୍ଛୁ ପଲ୍ଲବ ନାବରେ ପଦ ବିକଳ୍ପ ମନରେ
ପ୍ରତିହାର ପରରେ ମଣାଇ ବସାଇ,
ବିଶ୍ୱାମିତ୍ରଙ୍କୁ ଶ୍ରୀରାମ ପଚ୍ଛରନ୍ତେ ଗଙ୍ଗାନାମ
ଭାଗୀରଥୀ କପାଁ ହେଲା କହ ଗୋସାଇଁ,
ବିଷ୍ଣୁ ନଖକୋଣେ ଏ ଥିଲା
ବାମନାବତାରେ ଭଗୀରଥ ଆଣିଲା । ୫ ।
ବିଧିପୂର୍ବ କରି ରକ୍ଷି ସମସ୍ତ ଚରିତ ଭାଷି
ତଥିଁ ତ ହରିତ ଯାଇ ଲକ୍ଷଣେ କୂଳରେ
ବିହାରୀ ହେଲେ ମାର୍ଗର ମାର୍ଗର କମାଣଧର
ମାର୍ଗଣ ଶୋଭା ଲେଖାକୁ କନ୍ଦର୍ପ ଯାର
ବିଦେହ ମଣ୍ଡଳେ ପ୍ରବେଶ
ବାର ବେଳ ପୁର ଯାର ମୋହନ ପୁଂସ । ୬ ।
ବିପଣୀରେ ଥିଲେ ଜନେ ଭାବନା କଲେ ଦର୍ଶନେ
ଆଗତ କି ଧାତା ହର ମଧ୍ୟରେ ହର
ବିଭଞ୍ଜନ ଶିବଧନୁ କରି ମରକତ ତନୁ
ବିଭା ହେବେ ସୀତା ଯତ୍ନେ ଜନ୍ମିଛୁ ତିଷ୍ଠେ
ବଣ ଏ ରମ୍ୟରେ ମାନସ
ବିଜେ ରାମ ଅଦଭୁତେ ଶୁଭେ ଏ ଘୋଷ । ୭ ।

  

# ବର୍ଷା ଋତୁ

## ( ପଦ୍ମନାଭଶ୍ରୀଚନ୍ଦନ—ଶଶିରେଖା, ୩୨ ଶ ଛାନ୍ଦ )

### ରାଗ—ବରାଡ଼ି, ଅଷାଢ଼ଶୁକ୍ଳ ବାଣୀ

ବରଷା ପ୍ରବେଶ ହୋଇଲା ଆସି, କାଳିକା ଦଶେ ଦଶେ ପରକାଶି
ନଭେ ଢାଙ୍କିଲା ସୁନାଶିର ସ୍ୱପ, ଚଞ୍ଚଳା ଚଟକ ହେଲା ଅମାପ
ଘନ ଘଡ଼ଘଡ଼, ଘଡ଼କ ପଡ଼ ପଡ଼ୁଅଛି ମାଡ଼ ।୧।

କରକାପ୍ରକର ମହୀରେ ପଡ଼, କୁଳଶ ଘାତେ ଗିରିଶୃଙ୍ଗ ଛେଡ଼
ବିୟୋଗୀ-ଆଶା ଆସାରେ ପାତରେ, ବିନାଶ କଲା କେବଳ ସହରେ
ବିକାଳି ବିହାର, ଉଦ୍ଦଣ୍ଡ କି ଜସ୍ତୁ ଚବ୍ରିଳ ଦାମର ।୨।

ଝଞ୍ଜା ପବନ ପ୍ରଖରେ ବହିଲା, ଶିଖଣ୍ଡି ଶିଖେ ଶିଖୀ ନୃତ୍ୟ କଲା
ଭେକ ଡାହୁକ ଶାଳୁର ଶାମୁକ, ରବରେ ପୂର୍ଣ୍ଣ କଲେ ମହୀଯାକ
ଫୁଟି ହଳପ୍ରିୟ, ମଣ୍ଡିଲେ ତହିଁ ମଣ୍ଡଳ-ନଚୟ । ୩ ।

କଦଳୀ କନ୍ଦରୁ ବାହାର ହେଲା, କେତେକ ତହିଁ କେତକ ଫୁଟିଲା
ମାଳତୀ କୁସୁମ ସୁଷମ ହୋଇ, ଫୁଲ୍ଲି ବାସରେ ପ୍ରସରିଲା ମହୀ,
ଗନ୍ଧବହ ଗନ୍ଧ, ଯେବେ ବହିଲା ହୋଇଣ ଆନନ୍ଦ । ୪ ।

କୁଟଜ ମଲ୍ଲୀ ରଙ୍ଗଣୀ ଜାତୀ ଜେଲୀ, ଗନ୍ଧଶିଉଲୀ ଯୂଥିକାଦ ମଲ୍ଲୀ
ଦାଡ଼ ତମ୍ବ ଅର୍ଜୁନ କୁସୁମ, ଫୁଟିବାରୁ ହେଲେ କି ମନୋରମ ।
ବନ ଘୋର ଦଶେ, ବନ ପୂରିଲା ସକଳ ପ୍ରଦେଶେ । ୫ ।

ଘନ ବନ୍ଧନ ମହୀରେ ଘୋଟିଲା, ପ୍ରଥମ ଗିରି ଶିର ଗିଲଦେଲା,
ଏ କ ରଖିବ ବରହେଣୀକୁଳ, କୂଳ ଲଙ୍ଘି ନଦୀମାନେ ପ୍ରବଳ
ବେଳୁ ବେଲ ହେଲେ, ତଟ ପ୍ରକଟ ତରୁ ବନାଶିଲେ । ୬ ।

ବେତସ ଫୁଟି ହସି ନଦୀକୂଳେ, କଟେଶ୍ୱଳ ଫୁଟି ନ ରହେ ଅଚଳେ
ଶୁଭ୍ର ଅମ୍ବରକୁ ଅଭ୍ର ଢାଙ୍କିଲା, ଦିଶି ଦିବସ ବାରି ତ ନୋହିଲା
ବାରି ତ ଅରତ, ପଡ଼ିବାରୁ ରେଣୁ ଜମ୍ବାଳ ବତ । ୭ ।
ଘୁଞ୍ଚି ଅବନ୍ତୀକ ଉଡ଼ି ମରାଳ, ଗଲେ ମାନସକୁ ହୋଇ ଚପଳ
ପିକ ବୃନ୍ଦ ଏହା ମୂକ ହୋଇଲେ, ଲୋକ ଶୋକ-ଜଳେ ବୁଡ଼ି ରହିଲେ
ଘୋର ଅନ୍ଧକାର, ହେବାରୁ ପଥ ନୋହିଲା ଗୋଚର । ୮ ।
ସରଣୀ ପୂର୍ଣ୍ଣ ହେବାରୁ ରସରେ, ତରଣୀ ରଖିଲେ ନଦୀ ବାଟରେ
ନାବିକ କଲେ ଯାଚକ ଆଦର, ପଥ୍ର ପଥିକଙ୍କୁ କରିଣ ପାର
ପରବାସ ତେଜି, ବ୍ୟାପାରୀ ଗୃହରେ ରହିଲେ ମଜ୍ଜି । ୯ ।
ହରଷ ହୋଇଣ କୃଷକ ଅତି, କରଷଣ କଲେ ଅବନୀ କ୍ଷିତି
ବରଷଣକୁ ଅନାଇ ଘନର, ଛନ୍ଦରେ ଜନେ କଲେକ ଆଦର
ହରଷ ଗୃହକୁ, ବରଷ ଏକା କରନ୍ତି ମାନ୍ଦକ ।୧୦।

# ଶ୍ରୀରାମ ବିଳାପ

## ( ବିଶ୍ୱନାଥ ଖୁଣ୍ଟିଆ—ବିଚିତ୍ର ରାମାୟଣ, ଆରଣ୍ୟକ କାଣ୍ଡ )

## ୧୭ଶ ଛାନ୍ଦ

କୋଦଣ୍ଡଧର କାମିନୀବରଙ୍କୁ ହରାଇ
କାରୁଣ୍ୟ କରୁଛନ୍ତି ବନ ଗିରିଙ୍କି ଗ୍ରହି ସେ
ହା ହା ମୋ ସୀତେ ଗୋ । ୧ ।

ଦଣ ଦଗ ନ ଦଶଇ ଯିବଇଁ ମୁଁ କାହିଁ
କେବଣ ଅସୁର ତୋତେ ଦେଲା ଅବା ଖାଇ
ହା ହା ମୋ ସୀତେ ଗୋ । ୨ ।

କମଳଦଳଲୋଚନା ଲୋଚନେ ମିଶାଇ
କହୁ ଯେ ଥାଉ ବଚନ ମନକୁ ରସାଇ
ହା ହା ମୋ ସୀତେ ଗୋ । ୩ ।

ଅନ୍ତଃପୁରେଁ ଯେତେ ତୋ ଅଛନ୍ତି ପ୍ରିୟ ସଖୀ
କି ବୋଲିବେ ମୋତେ ତୋତେ ସଙ୍ଗରେ ନ ଦେଖି
ହା ହା ମୋ ସୀତେ ଗୋ । ୪ ।

ଅଯୋଧ୍ୟା ରାଜପଣ ତୋ ବିନୁ କଲି ଦୂର
ଛଇ ବିନୁ କେମନ୍ତେ ହୋଇଥିବ ଅନ୍ତଃପୁର
ହା ହା ମୋ ସୀତେ ଗୋ । ୫ ।

ଲୁଚିଥିଲେ ଆସ ଆସ ମୋର ପ୍ରାଣସଖୀ
ପଳାଇ କେଣିକି ଗଲୁ ମୋର ଦୁଃଖ ଦେଖି
ହା ହା ମୋ ସୀତେ ଗୋ । ୬ ।

ଅଳପ ବିଚ୍ଛେଦ ଦୁଃଖେ ପ୍ରାଣ ମଣୁଥାଉ
ତନୁ ଅନ୍ତରକୁ ହୃଦେ ହାର ନ ପୂରାଉ
ହା ହା ମୋ ସୀତେ ଗୋ । ୭ ।

ସହସ୍ର ମୁଖେ କହିଲେ ନ ସରିବ ଗୁଣ
ସମସ୍ତ ଗୁଣମାନଙ୍କ ଅଟୁ ଭୂଷଣ
ହା ହା ମୋ ସୀତେ ଗୋ । ୮ ।

ତରୁରେ ଲତା ଦେଖିଲେ ଦେଖାଇ ସେ ଦେଉ
ବାହୁ-ଲତିକାରେ ତନୁ ଭିଡ଼ି ସୁଖ ପାଉ
ହା ହା ମୋ ସୀତେ ଗୋ । ୯ ।

ତୋ ଥିଲାକୁ ପର୍ଣ୍ଣଶାଳା ଦିଶୁଥିଲା ଶୋଭି
ସେ ଶୋଭା କେଣିକି ଯାଇ ଦିଶୁଛି ଅଶୋଭା
ହା ହା ମୋ ସୀତେ ଗୋ ।୧୦।

ଏ ମୃଗ ଶାବକ ସଙ୍ଗେ ରଙ୍ଗେ ଖେଳୁଥାଉ
କରିଶାବକ ଧରିଣ ଦେଲେ ସୁଖ ପାଉ
ହା ହା ମୋ ସୀତେ ଗୋ । ୧୧ ।

 

## ହନୁମାନଙ୍କୁ ସୀତାଙ୍କ କୁଶଳ ପୁଚ୍ଛା

**କେଶବ ପଟ୍ଟନାୟକ—କେଶବ ରାମାୟଣ, 'ସୁନ୍ଦରକାଣ୍ଡ'**

**୨୨ଶ ଛାନ୍ଦ**

ରାଗ—ରାମକେରୀ

ହରଷେ କହନ୍ତି ହର ଯେ
ଶୁଣ ରେ ଗୁଣମଣି,
ପାବନର କଥା କାମିନୀ—
ବର ପ୍ରସନ୍ନେ ଶୁଣି । ୧ ।
ଦୁର୍ବଳେ କ ସ୍ନେହେ ସବଳେ,
ରତ୍ନଙ୍କ ନିଧି ପ୍ରାପତ
ଆକାଶ ଚନ୍ଦ୍ରକ ପ୍ରକାଶ
ଅସି ହୋଇଲା ହସ୍ତ । ୨ ।
ଦେଖିଲା ଗୃହକ ଦେଖିଲା
କ ଯେ ଜଳଧରକୁ,
କାନ୍ତର ଶ୍ରୀକର ସନ୍ତକ
ସନ୍ଥେଁ ପ୍ରାପତ ତାଙ୍କୁ । ୩ ।
ଘେନଲେ ଶ୍ରୀହସ୍ତେ ଶଚ୍ଛିଲେ
ମାଥେ ଛୁଇଁ ମୁଦକ
ଧୀରରେ ଲଗାଇ ଉରରେ
ସ୍ନେହେ ଧରଲେ ଜାକ । ୪ ।
ଥନ ଥନ ବେନ ନୟନ
ପୂରେ ଲୋତକ ଜଳେ

ବଦନ ଯେତ ସୋ ଶ୍ୱେଦ 
କର ମୁଦ୍ରକୁ ଚୁମ୍ବିଲେ । ୫ ।
କେଣେ ତୁ ଅଇଲୁ ଏଣେ
ଏକା ଶୁଆମିଙ୍କି କର,
ଭୁଚ୍ଛା ରହିଥିବ ମୋ
ପାଇଁ ତାଙ୍କ ଅଙ୍ଗୁଳ । ୬ ।
ପୁଣି ପୁଣି କପିମଣିକି
ବୋଲେ ହୋଇ ଫୁଲଣା,
କାନ୍ତର ଅନ୍ତର-ଗତର
କଥା ତୋତେ ହୋ ଜଣା । ୭ ।
ଅସିଲୁ ଅନ୍ଧା କି ଭାଷିଲୁ
ପ୍ରାଣ ଦେଲୁ ରେ ବାବୁ
ନିଶ୍ୱାସ ବୁଡ଼ାକୁ ଉଶ୍ୱାସ
ପୀଡ଼ା କଲୁ ଯେ ସବୁ । ୮ ।
ଦେଖିଲି ଜୀବନ ରଖିଲି
ମନ୍ଦ୍ୟାନ୍ତ ବଅର୍ଥେ,
ଜୀଇବ ପ୍ରିୟଙ୍କୁ ପାଇବି
ଶତ୍ରୁ ହେଲା ପରତେ । ୯ ।
ହେଜଲ ଏଥର ବୁଝିଲ
ସ୍ୱାମ ବିଶ୍ୱାସ ତୋତେ,
ଏମନ୍ତେ ନୋହିଲେ କେମନ୍ତେ
ମୋହଠାକୁ ପେଷନ୍ତେ । ୧୦ ।
କହ ଓବନ ହଇ ଦେହ ହୋ
ଅଛୁ କୁଶଳ ପଣ,

ନ ଦେଖିଲେ ମୋତେ ସେହୁ ଯେ
ତାଙ୍କ ମନ କି ହୁଏ । ୧୧ ।
ଅଧୀର ହୁଅନ୍ତେ ସଧୀର
କରନ୍ତ କି ଲକ୍ଷ୍ମଣ,
ନାଦନ୍ତ କି ମୋତେ କାନ୍ଦନ୍ତ
ମୋର ବାହୁନ ଗୁଣ । ୧୨ ।
ପ୍ରବଳ ଚିନ୍ତାରେ ଦୁର୍ବଳ
ତାଙ୍କ ତନୁ କି ହୋଏ,
ଛାଡ଼ିବେ କି ମୋତେ ଲୋଡ଼ିବେ
ମନ କେମନ୍ତ ପାଏ । ୧୩ ।
କଲ୍ଲ କ ଦଇବ ଦେଲ୍ଲ କ
ଏ ବିଚ୍ଛେଦ ବିପତ୍ତି,
ପଡ଼ିଲି ବନ୍ଧରେ ଛାଡ଼ିଲି
ମୋର ନେହ-ସମ୍ପତ୍ତି । ୧୪ ।
ପାଣିକ ତେଜିଲ୍ଲ ଛଣିକ
ମୀନ ଛଣେ କ ଜୀଏ,
ଲୋଭ ନ ଛାଡ଼ଇ ଜୀବ ହୋ
ପିଣ୍ଡେ ଥିବାର ଯାଏ । ୧୫ ।
ସହୁଛୁ ଏ ଦଣ୍ଡ ରହୁଛୁ
ଏହୁ ମୁହାଁସ ହବ,
ସରଣ ପ୍ରଭୁଙ୍କୁ ସରଣ
ଗଲେ କାହୁଁ ପାଇବ । ୧୬ ।
ଦଶମ ମାସରେ ବିଷମ
ସନ୍ତାପରେ ମରୁଛୁ,

ନଇଲେ ସେ କାହିଁ ରହିଲେ
ଏତେ କାଳ ମୃତ୍ୟୁଛି । ୧୭ ।
ରାଗରେ ମୁଁ କେତେ ବାଗରେ
ଲକ୍ଷ୍ମଣଙ୍କୁ ବୋଇଲି,
କ୍ରୋଧରୁ ଏ ଅପରାଧରୁ
ଏତେ ସବୁ ହୋଇଲି ।୧୮।
ମରୁଛି କାନ୍ଦି ଘୁମରୁଛି
ଦିବା ରାତ୍ର ସେ ସ୍ୱତ
ଦୋଷକୁ ମୋ କଲେ ରୋଷକୁ
ଆଉ କେ ମୋର ଗତି ।୧୯।
କାନ୍ତକୁ ଝୁରି ଏକାନ୍ତରେ
ବସିଥାଏ ମଉନେ,
ବେଢ଼ନ୍ତି ପାଶରେ ଝାଡ଼ନ୍ତି
କେତେ ଅସୁରୀମାନେ ।୨୦।
ଚନ୍ଦ୍ରାଳି ରାବଣ ଖଣ୍ଡା ହେ
କାଲି ଥିଲା ଉଞ୍ଚାଇ,
ତାହାଠାରୁ ବାରେ ଜିଜଟା
ରଖିଗଲା ବଞ୍ଚାଇ ।୨୧।
ପୁଣି ବେନି ମାସେ ହାଣିବ
କହିଗଲା ବଜାଇ
ହନୁ ହେ, ଯିବ କ ମନୁ ହେ
ହେଜ ହୃଦ କାନ୍ଦଇ ।୨୨।
ପାମର ଦୈତ୍ୟକୁ ଯମର
ଭୟ ହେଲାଣି ମୋତେ,

ଗର୍ଜ୍ଜନରେ ଘୋର ତର୍ଜନ
ଢଏ ରାକ୍ଷସୀ ହୃଦେ ।୧୩।
ଶ୍ୱଶୁର ଗୃହସ୍ଥ ଶାଶୁର
ସିନା ସହନ୍ତ ଦୁଃଖ,
ଏ ଗ୍ରୁର କସ ମୋ ବଗ୍ରର୍
ଗଞ୍ଜେ ଭୁଞ୍ଜାରେ ଦେଖ ।୧୪।
ଆହା କରିବାକୁ କାହାର
ମୋରେ କୃପା ନ ଥାଇ,
ଯାହାର ମୁଁ ସେ ତ ମୋହର
କଷ୍ଟ ଦେଖିଲେ ନାହିଁ ।୧୫।
ମାପକ ଭିତରେ ଆସ ହେ
ବେନ୍ଦ୍ର ଘାଇଙ୍କି ଧରି,
ପୂରିଲେ ତା କଣ୍ଠ ମରିବ
ଶୁଣି ଯିବେଟି ଫେରି ।୧୬।
ଥସହଣ ମୋର କଷଣ
ହୁଏ ଚିନ୍ତାରେ ଘ ର
ବୋଇଲେ କେଶବ ହୋଇଲେ
ଭୂମ୍ବ କର୍ମ ଉଗାର । ୧୭।

# ଯଶୋଦାଙ୍କ ବିଳାପ

## ( ଭକ୍ତଚରଣ ଦାସ—ମଥୁରାମଙ୍ଗଳ, ୬ଷ୍ଠ ଛାନ୍ଦ )

### ରାଗ—ବରାଡ଼ି

ଆରେ ବାବୁ ଶ୍ୟାମଘନ    ତୁ ଗଲେ ମଧୁବନ
କାହା ମୁଖ ଅନାଇଁ ବଞ୍ଚିବି,
ହେବ ଦଶ ଦିଗ ଶୂନ୍ୟ    ଅସ୍ଥିର ହେବ ଜୀବନ
ନିଶିଦିବସରେ ଝୁରୁଥିବି ରେ, ଜୀବଧନ,
ଜୀବନ ବିହୀନେ ଯେହ୍ନେ ଝଷ
ରାଜା ବିନେ ଯେହ୍ନେ ଗ୍ରାମ ଦେଶରେ । ୧ ।

କାହା ଅଙ୍ଗେ ଚରୁଃଙ୍ଗମ    ଲେପିବି କରି ସୁଷମ
ନିଦ୍ରାରେ କେ ହେଉଥିବ ଘାରି,
କାହାକୁ ଅଞ୍ଜନ ଦେବି    ବସ୍ତ୍ର ପାଢ଼ି ଶୁଆଇବି
ପିଠାକୁ କେ ମାଗିବ ହରି ରେ, ଜୀବଧନ,
ଏ କଥା ସୁମରି ଯିବି ମରି
ନଷ୍ଟେଁ ଯେବେ ଯିବୁ ମଧୁପୁରୀ ରେ । ୨ ।

ବାନ୍ଧିବି କାହାର କେଶ    କୁସୁମେ କରି ସୁବେଶ
କାହା ଲଲାଟରେ ଦେବି ଚିତା,
କାହାର କର୍ଣ୍ଣେ କୁଣ୍ଡଳ    ଖଞ୍ଜିବି ରେ ମୋର ବାଳ
କାହାପାଇଁ କରୁଥିବି ଚିନ୍ତା ରେ, ଜୀବଧନ,
କାହା ଅଙ୍ଗୁ ଧୂଳି ଦେବି ପୋଛି
ଝୀନ ବାସ ପିନ୍ଧାଇବି ବାଛି ରେ । ୩ ।

ଯେତେବେଳେ ବନେ ଯାଉ  ସଙ୍ଗେ ମୋର ପ୍ରାଣ ନେଉ
ନିମିଷେ ବିଚ୍ଛେଦ ନ ସହଇ,
ଏବେ ଯିବୁ ମଥୁରାକୁ  ମୋତେ ସମର୍ପି କାହାକୁ
ଚନ୍ଦ୍ରମୁଖ ନ ଦେଖିଲେ ମୁହିଁ ରେ, ଜୀବଧନ,
ଜୀବନ ହାରିବି ଗଣ୍ଡଜଳେ
ତୁ ମୋତେ ଅନ୍ତର ହେଲେ ତଳେ ରେ । ୪ ।
ସର ଲବଣୀ ଅଧାମ  ପକ୍ୱରମ୍ଭା ସୁଧାସମ
ମୁଖେ ଦେଲେ ଥୁଥୁ କରି ଫିଙ୍ଗୁ,
ଯେତେ ରୁପେ ନାଳଥାଇଁ  ପରଷଇଁ ବଳଥାଇଁ
କୋପେ ଉଠି ପାକଷାଣ୍ଡ ଭାଙ୍ଗୁ ରେ, ଜୀବଧନ,
ଏବେ ଦୂର ହୋଇବ ସେ କଥା
କି ନ କରେ ଦାରୁଣ ବିଧାତା ରେ । ୫ ।
ଗୁଇକ ଅନାଇ ଡରୁ  ଧାଇଁ ମୋତେ କୋଳ କରୁ
ବସନେ ଘୋଡ଼ାଇ ମୁଖ ଗୋଟି
ହେଉଥାଉ ଥରହର  ଦେଖିଲେ [illegible]
ଡିଇ ପାବକ୍ଷ ନ ପାରୁ ଉଠି ରେ, ଜୀବଧନ,
ମଧୁପୁରେ ହସ୍ତୀ ଘୋଡ଼ାମାନ
ଗର୍ଜିଲେ ନ ଡରୁ ଶ୍ୟାମ ପୁଣ ରେ । ୬ ।
କାହ୍ନେ ଦେଖି ଶବପନ୍ତ  ନାନା ଭୟଙ୍କର ମୂର୍ତ୍ତି
ଭୟେ ଯାଉ ସେ ଘରୁ ପଳାଇ
ଏବେ କଂସପୁର ଯିବୁ  ରାକ୍ଷସମାନ ଦେଖିବୁ
ଡରି କାହାକୁ ଧରିବୁ ଯାଇ ରେ, ଜୀବଧନ,
ମାଏ ବୋଲି ଡାକିବୁ କାହାକୁ
ଯାହାକୁ କେ ଆହା ବୋଲିବାକୁ ରେ । ୭ ।

ନିଶାକାଳେ ମୋର କୋଳେ ଶୋଇଥାଉ ଶ୍ରମବଳେ
ସ୍ୱପନରେ ଦେଖୁ କଂସ କଂସ
ମା ବୋଲି ଚମକ ପଡ଼ୁ କଣ୍ଠେ ଦୁଇ ଭୁଜ ଭିଡ଼ୁ,
ପୁଣି ଶୋଉ ଯୋଡ଼ି ହୋଇ ବାପ ରେ, ଜୀବଧନ,
ସେ କଥା ସୁମର ମରିଯିବି,
ଉଠ ବୋଲି କାହାକୁ ଡାକିବି ରେ । ୮ ।
ପ୍ରଭାତ କାଳେ କେ ମୋତେ ଡାକିବ ଯୁଧା ଆରତେ
କାହାକୁ ଭୁଞ୍ଜାଇ ଦେବି ସର
କେ ଧରି ମନ୍ଥନ ଦଣ୍ଡ ଭାଙ୍ଗିବ ମୋ ଦଧିଭଣ୍ଡ
କାହାକୁ ବାନ୍ଧିବି ଅଞ୍ଚଳ ଧରି ରେ, ଜୀବଧନ,
କାହା ନାମେ ଗାଉଥିବି ଗୀତ
କାହାକୁ ଡାକିବେ ଗୋପସୁତ ରେ । ୯ ।
କାହା ନାମେ ଗୋପନାରୀ କହିବେ ମୋରେ ଗୁହାରି
କାହା କରୁ ଛଡାଇବି ମାଡି,
ଦେହୁ ଭୁଣ୍ଡି ଦେଖାଇବ ଖେଳେ କେହୁ ଦେଖାଇବ
ଅଧାମ କାହା ଅଧରେ ଦେବି ରେ, ଜୀବଧନ,
କାହାକୁ ବୋଲିବି ଝୁଲି ହାତ
କାହାକୁ ଡାକିବି କର ପାତି ରେ । ୧୦ ।
ଗାଈ କେ ଚରାଇନେବ ରାମ ସଙ୍ଗେ ବନେ ଯିବ
ନାନା ରଙ୍ଗେ କେ ବାଇବ ବଂଶୀ
କରିବ କେ ବାଳକେଳି ମଧ୍ୟେ ନାଚୁଥିବ ଭଳି,
କାହାକୁ ଗୁହିଁବେ ବ୍ରଜବାସୀ ରେ, ଜୀବଧନ,
ଅସୁନ୍ଦର ଦିଶିବ ଭୁବନ
ଆଉ କାହ୍ନୁ ଦେଖିବ ସେମାନ ରେ ।୧୧ ।

କେ ଆଣି ଦେବ ନନ୍ଦକୁ     ଦାଣ୍ଡେ ଖୋଜିବ କାହ୍ନାକୁ
କାହ୍ନାକୁ ଦେଖିବ ନୀପମୂଳେ
କେହ୍ନୁ ବନେ ପଳାଇବ     ନନ୍ଦଙ୍କ ଆଗେ କହିବ
ଆଜ ମୋତେ ମାଏ ମାରୁଥିଲେ ରେ, ଜୀବଧନ,
ତହୁଁ ପାଇଁ ଚଣ୍ଡ ହେବେ ତାତ
ମୋତେ କ୍ରୋଧେ ଦଣ୍ଡିବେ ବହୁତ ରେ ।୧୨ ।
ଏତେ ବୋଲୁ ନନ୍ଦରାଣୀ     ନୟନୁଁ ବହାଇ ପାଣି
ଚୁମ୍ବ ଦେଇ ଶ୍ୟାମ ଗଣ୍ଡସ୍ଥଳେ
ନୀଳାମ୍ବର ମୁଖ ଗୃହିଁ     ବୋଲନ୍ତ ମୋ ବାପ, ଭାଇ
କାଲି ଯିବ ମଥୁରାମଣ୍ଡଳେ ରେ, ବଳରାମ,
ସଙ୍ଗେ ସଙ୍ଗେ ଘେନିଥିବୁ ହରି
ଡରିବନ୍ତି ଦେଖି କଂସପୁଷ୍ଟ ରେ । ୧୩ ।



## ଶ୍ରୀରାଧାଙ୍କ ଅନୁରାଗ

( ସଦାନନ୍ଦ କବି ସୂର୍ଯ୍ୟ ବ୍ରହ୍ମା—ପ୍ରେମତରଙ୍ଗିଣୀ, ୪ମ ସ୍ଥାନ୍ଦ )

ରାଗ—ଅଷାଢ଼ ଶୁକ୍ଳବାଣୀ

ଆରେ ସଜନୀ, ତା କହିବ କେତେ
କୃଷ୍ଣର ରୂପ ଗୁଣ ଚେଷ୍ଟା ଯେତେ
ଚତୁର୍ଦ୍ଦଶ ଭୁବନରୁ ବାହାର
ମୋହ ନୋହିବ କେଉଁ ନାରୀ ନର
ପକ୍ଷୀ ମୋହିତା ସାରୀ,
ତା ଗୁଣ କହୁଁ ନେନ୍ଦୁ ବହେ ବାରି । ୧ ।

ପଶୁ ସିନା ସେ ଧବଳୀ ଶାମଳୀ
ଶୋଭା ଗୃହ ନେନ୍ଦୁ ଲୋତକ ଗଳି
ତୃଣ ମୁଖେ ନ କରନ୍ତି ଅଶନ
ମୃଗ ଶୂକର ବାନର ଏସନ
କୃଷ୍ଣରେ ମୋହିତ,
ନୋହିବ ଦେଖି କେ କହ ଜଗତ । ୨ ।

ଗୋପାଳଙ୍କର ସେ ଦାରା ବଇସି
କହ ନାହାନ୍ତି ଦନେ ଧନ୍ଦା କରି
ବୋଲନ୍ତି କୃଷ୍ଣ ସର୍ବ ଗୁଣେ ପୂର୍ଣ୍ଣ
ମାନ ନଷ୍ଟ ପଣେ ଧଅଇ ଧନ,
ସେ ଯେତେ ସୁନ୍ଦର,
ପୁରୁଷ ମୋହ ନାରୀ କେଉଁ ସ୍ମର । ୩ ।

ସଖୀ ରେ, ଯେତେ ନନ୍ଦ'କୃଷ୍ଣ ଯେନ
ଶୁଣି ମୁଁ ଦେହ ପଥର କଲିଣି
କେ ଅବା ତା ଚନ୍ଦ୍ରମୁଖ ନ ଚାହିଁ
ମୁଁ ଚାହିଁ ଦେଲେ ଅପବାଦ ବହି
କାହିଁ ପଳାଇବି,
କି ଉପାୟରେ ପ୍ରୀତି ପାସୋରିବି । ୪ ।
ପ୍ରୀତି ହୋଇ ମାତ୍ର ଦୁଇ ଅକ୍ଷର
କାହୁଁ ଜନ୍ମିଲା କାହିଁ ତାର ଘର
ମୋ ହୃଦ ମଧ୍ୟେ ମିଶିଲା କି କରି
ନିରତେ ବୁହାଇଲା ନେତ୍ରୁ ବାରି
ସେ ଗୁଣ୍ଡି ନ ଗଲା,
ମୋ ସୁନା ଦେହ ଚୂନା କରିଦେଲା ।୫।
ଯେ ପ୍ରୀତି ଜାଣି ନୁହଇ କେମନ୍ତ
ଦହନ ନୁହେଁ ଦହୁଅଛି ଚିତ୍ତ
ଖଡ୍ଗ ନୁହଇ ଅଙ୍ଗ ହୁଏ ଘାର
ଅମୃତ ନୁହେ ସ୍ୱାଦୁ ସର୍ବୋପରି
ନୋହେ ତ ଜଉରି,
ହୃଦ କାଟୁଛି ଚିକି ଚିକି କରି ।୬।
ପ୍ରୀତି ପାସୋରା ମନ୍ତ୍ର କେ ଜାଣଇ
ତାକୁ ସେବନ୍ତି ଦାସୀ ପରା ହୋଇ
କଳା ଦେଖି କାଳ ବୁଦ୍ଧି ହୁଅନ୍ତା
ମନେ ନ ଆନ୍ତା ପ୍ରୀତି ଲୋଭ ଚିନ୍ତା
ମୋ ଶାଶୁ ନଣନ୍ଦ,
କାହିଁକି ମୋ ସଙ୍ଗେ ଲଗାନ୍ତେ ଦ୍ୱନ୍ଦ୍ୱ ।୭।

ଶାଶୁ ନଣନ୍ଦ ମାତାପିତା ସ୍ୱଗ
ଗୃହପତିରେ ଯେତେ ଅନୁବ୍ରତ,
ଦେବତାମାନଙ୍କୁ ଯେଉଁ ଭକତି
ନ ଗଣିଲୁ ଧର୍ମ କର୍ମ ମୁକତି
ପର ଲୋକ କ୍ଷତି,
ପାଇଁ ଶ୍ୟାମବନ୍ଧୁ ସ୍ନେହ ସମ୍ପତ୍ତି । ୮ ।
ଛଳେ ଶିବ ସୂର୍ଯ୍ୟ କାଳୀ ପୂଜଇ,
ପରମେଶ୍ୱରଙ୍କୁ ଭେଟିବା ପାଇଁ,
ଅନ୍ତପୁରୁଁ ଏହି ବ୍ୟାଜେ ବାହାର,
ଏ ଯେମନ୍ତ ଗୁରୁଜନେ ଅଙ୍ଗୀକାର,
ନାନା ଉଦ୍ୟମରେ,
ବନ୍ଧୁକୁ ଲଭଇ ପରିଶ୍ରମରେ । ୯ ।
ଔଷଧ ଅଛି କରିବାକୁ ରୋଗ,
ଯେଉଁ କାର୍ଯ୍ୟକୁ ଯେବା ଉପଯୋଗ,
ସର୍ବ ବିଷୟ୍କ ବିହି ଅଛି ବିଦ୍ଧି,
ପ୍ରୀତି ଛାଡିବାକୁ ଉପାୟ ନାହିଁ,
ଲଭ ଏହି ଜାଣ,
ପରପୁରୁଷ ଲାଗି ଯିବ ପ୍ରାଣ ।୧୦।
ପ୍ରାଣ ଗଲେ ଭଲ ହୁଅନ୍ତା ପିନା
ନ ମରିବା ନ ଛାଡିବା ଯାତନା,
ବିଷ ଅମୃତ ମିଶ୍ରିତ ଏ ରସ
ଅତ୍ୟନ୍ତ ଆନନ୍ଦ ଅତ୍ୟନ୍ତ ତ୍ରାସ
ସୁଖ ଭେଳ ନୋହେ,
ତପତ ଇକ୍ଷୁ ଚର୍ବଣ ପରାୟେ ।୧୧।

ସମାନ ବୟସ ସମାନ ସୁନ୍ଦର
ସମାନ ଗୁଣ ସମାନ ବେଶର,
ସମାନ ସ୍ନେହ ଅଧୀନତା ମନ
ସେ ଦୁହିଙ୍କ ମଧ୍ୟେ ପ୍ରୀତି ଗଭୀର
ସେ ଯାହା କରଇ,
ସେ କାଠ କୁଣ୍ଢାଇ ନାହୁଁ ଅ ପ୍ରାୟେ ।୧୨।
କହିବାକୁ ମୋତେ ମାଡ଼ୁଛି ହସ,
ତାହାଙ୍କ ମୋହର ଯେଉଁ ମାନସ
ସ୍ଥାବର ଜଙ୍ଗମ କୀଟ ପତଙ୍ଗ
ଦେଖିଲେ ନେଇ ସଙ୍ଗ ଦୁଇ ଅଙ୍ଗ
ଆମ୍ଭ ପରି ସ୍ୱର,
ଚମକ ପଡ଼ ହାଦେ ହାତ ମାର ।୧୩।
ଆପଣାଠାରେ ସ୍ନେହ ଯେଣୁ ମାନ
ଦୁଇରେ ପୂର୍ଣ୍ଣ କର ଯେଉଁ ଗାନ
ଦୁଇ ଭୂରୁ ଅଖି ଶ୍ରବଣ ଯୁଗ
ନାସାପୁଟ ଅଧରହିଁ ଦ୍ୱିଭାଗ,
ହସ୍ତ ପାଦ ଦୁଇ,
ଏକୋଇଶ ଅଟେ ଟିକା ରେ ସହି ।୧୪।
ପୁଷ୍ପ ଚନ୍ଦନ ଆଦ ମିଳିବାରୁ
ନିଜ ହୃଦକୁ ସମର୍ପଣ କରୁ,
ଯେ ଯେଉଁ ଅଙ୍ଗର ଅଟଇ ଯୋଗ୍ୟ
ପଛେ ସେ ସ୍ଥାନରେ କରୁ ସଂଯୋଗ ।
ଏ ଚେଷ୍ଟା କାହାର
ସଂସାର ଭିତରୁ ଅଟେ ବାହାର ।୧୫।

* * *

ସଖୀରେ ଏ କଉଣ କହ ମୋତେ
ଉପାୟ ଦଶୁନାହିଁ ତ ଜଗତେ
ନ ଦେଖିଲେ ବନ୍ଧୁ ଚନ୍ଦ୍ରବଦନ
ହୁଅଇ ମୁଁ ସେ ଜଳଣ୍ଟ ସମାନ
ଯାହା ମୁଁ ଦେଖଇ,
କୃଷ୍ଣ ପରାଏ ସେ ପ୍ରତେ ହୁଅଇ । ୧୬ ।
ଫୁଟନ୍ତ ଦେଖିଲେ ଶ୍ୟାମା ସଖୀକି,
କ ହେ ବନ୍ଧୁ ବୋଲି ସମ୍ମୁଖେ ଡାକି
କୃଷ୍ଣ ଅନୁରାଗେ କରଇ କୋଳ
ଚୁମ୍ବଇ ଆପଣା ଖାଲ ଦୁକୂଳ
ଏମନ୍ତ ବାଉଲ
କ କଥା ଅବା ଅଛୁ ଏଥି ମୂଳ । ୧୭ ।
ନବନୀରଦ ପର୍ବତ କାନନ
ଆପଣାଠାରେ ହୁଏ କୃଷ୍ଣ ଜ୍ଞାନ
ବଂଶୀ ଧରଇ ପର ହାତ କର
ନ ଭଙ୍ଗୀ ହୋଇଯାଇ ମୁଁ ସେପର
ଗ୍ରୀବ ହୋଇ ପୂର୍ଣ୍ଣ
ଝର ଝର ଝରେ ଲୋଚନୁ ଅର୍ଣ୍ଣ । ୧୮ ।
ଦେଖିଲି ବେଢ଼ କେନ୍ଦ ପାଶେ ପାଶେ
ଥିଲ ପରାଏ ପ୍ରତ୍ୟକ୍ଷଣେ ଦଶେ
ହୃଦୟ ତ ମୋର ଅଳପ ସ୍ଥାନ
ତହିଁ କରୁପ ସମ୍ଭାଇବ ଧନ
ସମ୍ଭାଳ ନୁହଇ,
ଥରେ କହଇ କ ମୋତେ କହାଇ । ୧୯ ।

ହା ବଂଧୁ ! ହା କୃଷ୍ଣ ! ଚନ୍ଦ୍ରବଦନ !
ଏ ନାମମାନ ବୋଲିବାକୁ ମନ
ମୁଁ ପରବଧୂ ସେ ପର କୁମର
ଲୋକ ଜାଣିବା ପାଇଁ ମହାଡର
    କି କରିବ ବୁଦ୍ଧି,
ଧିକ ଏ ନାରୀ ଜନ୍ମ ଦେଲା ବିଧି । ୨୦ ।
ଏ ଦେହ ତେଜି ଦେହାନ୍ତର ଧରି
ଭ୍ରମିବି ଭୁବନେ ହୋଇ ଭିଖାରୀ
ହେ କୃଷ୍ଣ ! ହେ ନାଥ ! ହେ ଶ୍ୟାମଘନ !
ଉଚ୍ଚେ ଗାଇନ ତବ ସୁଧା ନାମ
    ଲୋଟୁଥିବି ତଳେ,
ହୃଦୟ ମଣ୍ଡି ହୋଇ ଅଶ୍ରୁଜଳେ । ୨୧ ।
ଯେ ପୁଣି ସେ କାଳେ ଥିବେ ମୋ ସଙ୍ଗ
ମାନସେ ନାରୀ ଧରି ପୁଂସ ଅଙ୍ଗ
ତାହାଙ୍କ ଲାଗି ମୋହ ଆର୍ତ୍ତି ଯେତେ
ଆପେ ଅନୁଭବ କରିବେ ତେବେ
    ଆପେ ଆପଣାକୁ
ଭଜିବେ ଧରି ବାଳୁଙ୍ଗ ଚେଷ୍ଟାକୁ । ୨୨ ।
ଆଳି ରେ ! ଏମନ୍ତ ବିହୁ ଦଇବ
ଜାଣିବେ ଠିକ ସୁଧା କ୍ଳେଶ ଭାବ
ନୋହିଲେ ମୋତେ କର ତାଙ୍କ ଦାସ
ସର୍ବଦା ଖଚିତ ପାଦସାରସ
    ଧଇ କହୁଁ ଏତେ
ଦୀର୍ଘ ଶ୍ୱାସ ଗଣି ନୋହିବ କେତେ ।୨୩ ।

   

# ବର୍ଷା

[ କେଶବ କବିରାଜ—ଅନଙ୍ଗରଙ୍ଗିଣୀ (ଅପ୍ରକାଶିତ) ]

ବିଷମ ଆତପ ଗ୍ରୀଷମ କାଳ ତଦନ୍ତେ ଶେଷ,
ସେ ରସା ସୁଖଦ ବରଷା ଋତେ ହେଲା ପ୍ରବେଶ ।
ଅମ୍ବୁଧର ମେଘେ ଅଚ୍ଛନ୍ନ ହୋଇ ଗଗନେ ପୂରି,
ବରଷିଲେ ଜଳ ଗରଜି ମହୀମଣ୍ଡଳ ପୂରି ।
ତଡ଼ିତରେ ନଭ ଜଡ଼ିତ ହେଲା ପସ୍ୱଏ ଦଣେ,
ତରକା ନ ଗଲା କରକା ନିତ କେତେ ବରଷେ ।
ଆଖଣ୍ଡଳ ଗୃପ ଅଖଣ୍ଡ ହୋଇ ହେଲା ପ୍ରକାଶ
କୁରତ ଅତଲେ ଚୂରିତ ହେଲେ ପଢ଼ି କୁଳଣ ।
ଆସାରେ ସମସ୍ତ ଆଶାରେ ଭ୍ରମ ହେଲା ଉଦତ
ନୂତନ ବୃଷ୍ଟିରେ ଯତନେ ବାପ ରସାରୁ ଜାତ ।
ସଲିଲ ସରିତ ପୂରିତ ହୋଇ ଲଙ୍ଘିଲେ କୂଳ,
ତୀର ତରୁକୁ ଅଦରତେ ହେଲେ ଜଳେ ନିର୍ମୂଳ ।
ତରଣୀ ସରିତ .ସରଣୀମାନଙ୍କରେ ପଙ୍କାଇ,
କହୁଡ଼ି ଉଡ଼ିଲେ ବାଉଡ଼ିମାନେ ହରଷ ହୋଇ ।
ଫୁଟିଲା କେତକୀ ଉଠିଲା ଭେକ ଜଡ଼ ଗର୍ଜ୍ଜନ
ଛୁଟିଲା ସନ୍ତାପ ତୁଟିଲା ମାନବତୀଙ୍କ ମାନ ।
ସାଜିଲା ମଦନ ମାଞ୍ଜିଲା ଗୁଣ ଫୁଲଧନୁପର,
ତଜିଲା ଭରସା ଭାଜିଲା ଦେଖି ବିଦେଶୀଙ୍କର ।
ବରଷା ଉତ୍ପାତେ ଧରଷା ଜନମାନେ କାତର
ନ ରହି ବିଦେଶୀ ସ୍ୱଦେଶେ ବେଗେ ଚଳିଲେ ଘର ।

ବିଧୁର ଅଭାବେ ବିଧୁର ଦଶା ଲଭେ ଚକୋର
ସ୍ଫୁରିତ ଉଲ୍କାରୁ ଚାତକ ନାଶ ଗଲା ମେଘର ।
ଅସମୟେ ଅତି ବିଷମ ବ୍ୟଥା ଲଭେ ରଥାଙ୍ଗ
ମାନସ ଗମନେ ମାନସ ବେଗେ ଦେଲେ ଚକ୍ରାଙ୍ଗ ।
ଅପ୍ରିୟ ହେଲା ବନପ୍ରିୟ ମତ୍ତ ହେଲା ଶମରେ
ମଧୁର ପ ଜରୁ ମଧୁର ଧ୍ୱନି କଲେ ଭ୍ରମରେ ।
ଖଦ୍ୟୋତମାନଙ୍କ ସ୍ଫୁଟଦ୍ୟୋତ ଲଭି ରମ୍ୟ ଅମ୍ବର
କାଳିକା ବଳାକା ମାଳିକା ସନ୍ନିଧିରୁ ସୁନ୍ଦର ।
ନବଦ ହୁଙ୍କାର ଶ୍ରବଣ ଶୁଣି ଶର ବିଯୋଗୀ
ସାଦରେ ଉତ୍କଣ୍ଠ ନାଦରେ କଣ୍ଠ ଡେରିଲେ ବେଗି ।
ସରଣୀମାନଙ୍କେ ଧରଣୀ ଇନ୍ଦ୍ରଗୋପେ ପୂରିତ
ଗଜର ଶର ଚାଙ୍କ ଜ୍ୱର ହେଲା ହେମଳ ତୃଷିତ ।
ପବନ ଫଳି ଉପବନ ସଙ୍ଗୁ ସୁଖ ଦିଅନ୍ତି,
ବାସରେ ବିପିନ ଦେଶରେ ମନ ହରେ ମାଳତୀ ।
ନୂତନ ତୃଣରେ ସଚନ ବନ ଉପାନ୍ତ ଦେଶ
ବିଶାଳୟ ଭରେ କୁଶଳ କାନ୍ତି ଲତା ପ୍ରକାଶେ ।
ସ୍ଥଳରେ ଚଞ୍ଚର ଜଳରେ ପଦ୍ମ ହେଲା ଆଦର
କରଦମ ଦୁଃଖ ଦରଦ ହେଲା ପାନ୍ଥ ଜନର ।
ବରଷାନ୍ତେ ଅତି ସରସ କୁଷ୍କୋଡ କାମିନୀ
ବଳଅଁ ହେଲେ ହଳଅ ମୂଲ ମିଳିଲା ଯେନ ।
ହୁଳହୁଳ ଧ୍ୱନି ବେଲକୁ ବେଲ ପ୍ରବଳ କରି
ଧନ ଭୁଅଇବା ବିଧାନ କଲେ ହଳିକା ନାରୀ ।
ଆଦର ଛଡ଼ାରେ ପାଦର ଉପାନହ ଳ ହଳ
ଭଜଲେ ପ୍ରସାଦ ତେଜଲେ ଜନେ ପଲ୍ଲିକ କେଳି ।

ଆକାଶ ଦେଶରେ ପ୍ରକାଶ ଦନକର ନୋହିଲେ
ଜାମଣି ମଣ୍ଡଳ ଯାମିନୀ ଶଙ୍କା ଦବସେ କଲେ ।
ଦାବଦହନର ଶବଦ ନ ଶୁଭିଲ ଥଚଳେ
ପାରବତ ପକ୍ଷୀ ପରବତ ଗୁହାକୁ ସେ ଗଲେ ।

× × ×

# ତ୍ରିପୁରସୁନ୍ଦରୀର ଶୋଭା

[ଘୁମୁସର ରାଜା ଧନଞ୍ଜୟ ଭଞ୍ଜ—ତ୍ରିପୁରସୁନ୍ଦରୀ, ୩ୟ ଛାନ୍ଦ]

( ଅପ୍ରକାଶିତ )

### ରସକୁଲ୍ୟା ରାଗ—ଆଷାଢ଼ଶୁକ୍ଳ ବାଣୀ

ନୟନେ ଅଣି ଜୀବନକୁ ଭରି, ନିମିଷ ସଙ୍ଗେ ବସ୍ତ୍ର ଯାଚରି । ଅବଲୋକନେ ମନ ଏକତାନ, କରି ପ୍ରକାଶେ ପ୍ରଶଂସା ବଚନ । କି ରୂପ ଏ ବାଳା, ଭଲ ସେ ତାମରସ ଜ୍ୟୋତିର୍ମାଳା । ୧ ।

ଅଧର ମଧରେ ସ୍ନାନ କରୁଛି, ଏମନ୍ତ ହାସେ ଆନନ ପୂରିଛି । କେବଳ ହରଷ ଲେଶମାତ୍ରକୁ, ଭଙ୍ଗ ଯାଉଛି ଏମନ୍ତ ଶୋଭାକୁ । ଏ ହରଷେ ଗତି, ଗୁହ୍ନି ବସିଲେ ହରିବ ସମ୍ମତି । ୨ ।

ବନ୍ଧୁଦ୍ରଷ୍ଟା ଆଜ ହୋଇଲି ବନେ, ହର୍ଷକୁ ସ୍ୱୟଂ ଦେଖିଲି ନୟନେ । ଏମନ୍ତ ସ୍ୱରୂପ ସଖୀ ହରଷ, ଯହିଁରେ ଯେଣ ଅଛି ମର୍ତ୍ତ୍ୟ ଦେଶ । ଭାଗ୍ୟ ହରଶର, ଏହାକୁ ପାଇ ହୋଇଲା ସୁନ୍ଦର । ୩ ।

ଚଞ୍ଚଳ ବେନି ନୟନ ଖଞ୍ଜନେ, ଅତ୍ୟନ୍ତ ଶୋଭା ଦଶନ୍ତି ଅଞ୍ଜନେ । ଉଡ଼ିଯିବା ଡରେ କିଏ ବିଧାତା, ଅଞ୍ଜନ ରଜ୍ଜୁରେ ବାନ୍ଧି ଅଛି ତା । କି କାମ ତୋମର, ମିଶାଇ କଲା ନୟନ ସୋଦର । ୪ ।

କି ଅବା ବଡ଼ନଜାର ବିଧାତା, ପଢ଼ୁଛି ସରୁ କରି କଳାସୁତା । ସୂତା ପ୍ରାନ୍ତଯାଏ ବେନି ନୟନ, ବଢ଼ିବ ଏଥି ସଂଶୟ ନ ଯେନ । ଭ୍ରୂଲତା ଧନୁର, ଗୁଣ ଛାଡ଼ି ବେନି ହୁଲେ ପ୍ରସ୍ଥର । ୫ ।

ଏ ଧନୁରେ ଯେତେ ଗୁଣ ରଖିବ, ଆଉ ମୁଁ ସୃଷ୍ଟି ସର୍ଜି ନ ପାରିବ । ବେଦ ବିଗ୍ରହମାନ ନାଶ ଯିବ, ବ୍ରହ୍ମକାମ ପରାଭବ ହୋଇବ । ଧାତା କି ବିଗ୍ରହ, ଗୁଣ ମଧ୍ୟରୁ ଦେଲା କ୍ଷୀଣ କରି । ୬ ।

ସେ ବିଷୟହିଁ ରହୁଅଛି କାହିଁ, ଅଛି କେବଳ ଏହାକୁ ନ ସୁହିଁ । ଛୁଡ଼ିଲା ଲୁଣ ଧନୁରେ ଏ ଶର, ସଂସାର ଓମାହୁ କରଇ ପ୍ରସ୍ତର । ଏ ଅପାଙ୍ଗ ନାମେ, ଜମ୍ବାସ୍ତ ଦେଲ୍ଲ ବଣ୍ୟୁକ ନାମେ । ୭ ।

ନ ରଥ ନ ଚ ମାଉ ନ ତ ହସ୍ତୀ, ନ ନାବ ନ ଉଷ୍ଟ ନ ଚ ଶଚସ୍ତି । ଏମନ୍ତେ ମଦନ ଜଗତଜୟୀ, କ କ ପ୍ରକାରେ କରୁ କରେ ଜୟୀ । ଏ ସଂଶୟ ଭଙ୍ଗ, ହୋଇଲା ବନେ ଏ ଦେଖି ଅପାଙ୍ଗ । ୮ ।

ଚଞ୍ଚଳ ନେତ୍ର କୁରଙ୍ଗ ଏହାର, ବନେ ଦେଖିଲ୍ଲ ମଦନ ଶବର । ତାହାଙ୍କ ଛଟଳ ପଡ଼ିଅଛି ପାଶ, ତେଣୁ ଉଜଇ ଚଞ୍ଚଳ ବିଶେଷ । ମୁଖଚାନ୍ଦ ଅଛି, ଆଖିରେ ମୁଖ ଅଛି ନୋହେ ଲକ୍ଷି । ୯ ।

ଦେଖ ଏ ଉଷିର ତପସ୍ୟା ବଳ, ଭୂମିରେ ଜାତ କଲ୍ଲ ସଂଲୋଚ୍ଛଳ । ସ୍ଥଳ ନଳନ ନୟନ ନବୁଚା, ଆଜ ପର୍ଯ୍ୟନ୍ତେ କରୁଥିଲ୍ଲ ଧାତା । ଆଜ ବ୍ୟତକ୍ରମ, ହୋଇଲେ ଚତୁରତା ଆଦ୍ୟ ଗୁଳ୍ମ । ୧୦ ।

ବାଳାକୁ ଅବଳା ବୋଲି କ ବଦ୍ଧ, ସବ-ବଶ-ବଳ ନୟନେ ଥୋଇ । ଉତ୍ପଳରୁପେ ଦେଲ୍ଲ କଳାମୃଦ, ଦେଖି କ ଜନେ ହୋଇବେ ପ୍ରମୋଦ । ପ୍ରଚମାଦରେ ଖେଦ, ମଣି କରଇ ଅନଙ୍ଗ ପ୍ରମାଦ । ୧୧ ।

କ ଯୁବା ପୃଥ ମାନସ ନଗଷ୍ଟ, ଧୈର୍ଯ୍ୟ ଅଧିପର ନାଶିବ ଶିଷ୍ଟ । ବାଳା ନେତ୍ରାନ୍ତ ଗଗନେ ଏ ହେତୁ, ଉଦେ ହୋଇଲେ ବେନି ଧୂମକେତୁ । କବା ନୀଳ ଦଣ୍ଡ, କରିବ ଉପଦ୍ରବ ମୁନ ବୃନ୍ଦ । ୧୨ ।

କୁସୁମେ ତୃମ୍ଭ ଦେଉଛି ନୟନେ, କ ପୁଣ୍ୟ ତରୁ ଅଛନ୍ତି ଭୂମନେ । ପୁଷ୍ପମାନଙ୍କୁ ଅନାଇବା ପାଇଁ, ହାହା ସଧୀରେ ପଡ଼ନ୍ତି ଓଟକଇ । ହା ପ୍ରସାରି ନେତ୍ର, ନଲ୍ଲ ମୋ ନୟନମନ ପବିତ୍ର । ୧୩ ।

ମନ୍ଥର ଲୋକ ଲଲିତ ଏ ନେତ୍ର, କଲ୍ଲ ମୋ ମନ ଲୋଚନକୁ ପତ୍ର । ଲିହିଲ୍ଲ ଏଥେ ମନମଥ ମନ୍ତ୍ର, ଗୃହିଁବା ସୁରସ ହୃଥଇ ଯନ୍ତ୍ର । ପୂଜିବା ଦେବତ, ଏହୁ ସୁଦନ୍ତୀ କ କରଛି ଧାତା । ୧୪ ।

ଯହିଁ ଦଗକୁ ଗୃହ୍ଣି ଅଛୁ ବାଳା, ସେ ଦଗ ଭୂଷଣ ନୟନ ମାଳା ! ନୟନମୟ ତ ଏ ବନଭୂବ, ମୁହିଁ ପାଇଲି ମଘବା ପଦବୀ । ମୁଁ ଶ୍ରେଷ୍ଠ ହୋଇଲି, ଅର୍ଜ୍ଜୁନ ପଦବୀ ଭାମକୁ ଦେଲି । ୧୫ ।

ପୁଣି ବଗ୍ଚର କରଇ ନୟନ, ଏ ବର୍ଣ୍ଣ ମୋଦମୃତ ବଶୋଧନ । ଏହା ଭୂଷଣକୁ ଆଜ ଲଙ୍ଘିବ, କଟାକ୍ଷେ କାନ୍ତ ଯେନ ପଳାଇବ । ଏ ବସ୍ତୁର ସିବ, କର ହରୁଅଛୁ ସକଳ ବୁଦ୍ଧି । ୧୬ ।

ବାଳା ସିନା ଋଷି ଆଶ୍ରମବାସୀ, କରୁଛନ୍ତି ଜଣି ନାହିଁ ସୃକ୍ଷ୍ମ-କେଶୀ । କର୍ଣ୍ଣରେ ଖଳ ଉତ୍ପଳ ଭୂଷଣ, ଏ କର୍ମରେ ପ୍ରଜାପତ ଇଷଣ । ଆଜ ନେତ୍ରହ୍ରାସ୍ତବ, ମୁହିଁ ଜାଣିଲି ନ ଥିଲି ମନରେ । ୧୭ ।

ଯେଣେ ଯେଣେ ଗୃହ୍ଣି ଅଛୁ ବମ୍ବୋଷ୍ଠୀ, ସେ ଦଗେ ହେଉଛୁ କଳକ ବୃଷ୍ଟି । ଦୃଷ୍ଟି ଉତ୍ତ୍ରବ ପ୍ରଶଂସା ଏହାବ,କ ପୁଷ୍ପବୃଷ୍ଟି କରୁଛନ୍ତି ସୁର । କେଣେ ଖେଳେ ଡୋଳା, କରୁଛି ଗୋଷ୍ପ କଳା କଳା ଧଳା । ୧୮ ।

ଆଦ୍ୟ ପ୍ରାନ୍ତରେ ଅଛୁ ଦ୍ରବ୍ୟ ରଙ୍ଗ, ମଧ୍ୟ ପଙ୍ଗରେ ଅସିତ ତା ସଙ୍ଗ । ପ୍ରାନ୍ତରେ ଅଛୁ ମର୍ମ୍ମଭେଦୀ ଲୋହ, ଉଜ୍ଜ୍ୱଳ ଶର ଥୋଇଛୁ ବଦେହ । ପଦ୍ମ ମୁଖ ଅଛୁ, କଉଁ ଉପମା ସମ କର ଲକ୍ଷି । ୧୯ ।

ଏ ନୟନ ଯେବେ କହିବ ବଧି, କପା ଉପମାମାନ ଜଳ ସିଦ୍ଧି । ଯଥ କଥଞ୍ଚିତ ସଦୃଶ ଯେବେ, ପାଇବ ଉପମା କରବ ତେବେ । ଯେତେକେତୋପମା, କାହିଁ ଅଛୁ କୋଟି ଅସରନ୍ତି ମା । ୨୦ ।

ନେତ୍ର ପ୍ରାନ୍ତରେ ଶୋଭ ବୁଦ୍ଧଗଳ, ଅଃଧଲୋକ ଦଭ କାଶ ହୋଇଲ । କ କରବା ଅବା ସଂଶୟ ଗୃହିଁ, ନେତ୍ର ଗୃହିଁ ତ ବୁଦ୍ଧି ସଞ୍ଚୁ ନାହିଁ । ଗାଢେ କର ନେତ୍ର, ଏ ନେତ୍ର ଗାଢକୁ କଲି ପବତ୍ର । ୨୧ ।

କୃଷ୍ଣ ରକ୍ତ ଏ କର୍ଣ୍ଣାବଲମ୍ବିନୀ, ଏ ନେତ୍ର ହୃଦ ଲୋକ ବଶ୍ୱାସିନୀ । ଇନ୍ଦ୍ରଜାଲ ପ୍ରାୟେ କରୁଛି ଲୀଳା, ଏଥି କପାଁ ଲୋକ

ବର୍ଣ୍ଣାସ କଲା । ଏ ତ୍ରିଜଗତ୍ ସବୁ, ମନଚନ୍ଦ୍ରକୁ ଗ୍ରାସେ ସ୍ବଚ୍ଛେଁ ସ୍ବଚ୍ଛେଁ ॥
ଏ ନେତ୍ର ପ୍ରଖର ହୋମ ଆହୁତ, ଜଗତ ଧୈର୍ଯ୍ୟ ସମିଧ ସମ୍ପତ୍ତି ।
ଯୌବନ ଘୃତ ମୂଢ଼ ମନ ସ୍ରୁବ, ନେତ୍ରାନ୍ତ ଅନଳ ଏଣୁ ଦହୁଚ ।
କଟାକ୍ଷ ସ୍ଫୁଲିଙ୍ଗ, ଶୋଭା ତା ହୋତା ବେତାପ ଅନଙ୍ଗ । ୨୩ ।
ଏ ଲୋଚନ ମନ୍ଦାରବନ କଳ୍ପିତ, ରସପୀୟୂଷ ଧର ସଞ୍ଚିତ ।
କ୍ଷଣକେ ଦଶଇ କେତେ ବିସ୍ତାର, ଇତରେ ଜଣି ପ.ରଇ ସଂସାର ।
କେ ଅଛି ବୋଲିବ, ବ୍ୟର୍ଥେ ଏଥେ କପାଁ ଶ୍ରମ କରିବା । ୨୪ ।
କଏ ଲୋକ ନେତ୍ର କ୍ଷୀର ସାଗର, ଜାତ ହେଉଅଛି ପୀୟୂଷ
କର । ଭବତରଙ୍ଗ ପାର ଅଗୋଚର, ଜେତେ ଦଶଇ ଅମୃତ
ବିସ୍ତାର । ବୁଡ଼ଇଁ କି କର, ଉଲୁଟାଇ କି କି ପ୍ରକାର କର । ୨୫ ।
ମୋହୋପମା ହୋଇ ଏକ ଲକ୍ଷଣା, ଥିଲେହେଁ ହଉଅଛି
ବଣା ବଣା । କୁଚଗିରିକି ଦେଖି ନିର୍ଲ୍ଲୋଚନ, ପୁଚ୍ଛ ପାଇ କଲେ
ଗିରି ଶୟନ । ଦେଖି ଏ ନୟନ, ସତ୍ୟ ହୋଇଲେ ଉପଲୋଚନ ॥
ଏହା ଲଲାଟକୁ କରି ଲୋଚନ, ଲଲାଟ ବହିଲେ ମୃଗ
ଲାଞ୍ଛନ । ମୃଗ ଉପମା ନୟନକୁ କରି, କରେ ମୃଗ ଏଣୁ ଅତ୍ୟନ୍ତ ଧରି ।
ବହିଲେ ଡମ୍ବରୁ, ଏହ ଭାବେ ଦେଖି ଏ କଟି ସରୁ । ୨୬ ।
ଅନାଇ ଏହାର କଣ୍ଠ ଡୋଳା, କଣ୍ଠ ତଟ ଦେଶେ
ଧରିଲେ କଳା । ଭୁଜକୁ ଅନାଇଁ ବହିଲେ ଅହି, ଅନଳ ବହିଲେ
ହୋଇବେ ତହି । ଘନକୂପ ବଶ, ଫଣିକ ବହିଲେ ଶ୍ରୋଣୀ ସଦୃଶ ॥
କବରୀ ଶୋଭା ଦେଖି ଜଟାଜୁଟ, ବହନ୍ତି ସ୍ବନ୍ଧ ତାଣ୍ଡବ ନାଟ ।
ଭୃରୁ ଅନାଇଁ ପିନାକୀ ଧରିଲେ, ନାସା ଅନଙ୍ଗ ତୂଣୀର ବହିଲେ ।
ଅଳତା ଅଧର, ଦେଖି ନୀଳ ଲୋହିତ ଅଙ୍ଗୀକାର । ୨୭ ।
ସ୍ବଭାବ ଏହାର ଚକ୍ର ପାଷାଣ, ଟଙ୍କ ବହିଲେ ଦୈନ୍ୟ
ନିବାରଣ । ତେବେହେଁ ମନର ଛିଦ୍ର ନ ପାଇ, ଭୁଲୁଅଛନ୍ତି ଚାଇ

କେଣ ହେବ । ଧ୍ୟାନ ଧାରଣାହିଁ, ଏ ଚନ୍ଦ୍ରମୁଖୀ ସଙ୍ଗକୁ ନ ପାଇ ॥

ମନେ ହସ୍ତୁଛନ୍ତି ପାଣକୁ ଯିବ, ଏ କଣ୍ଠ ମଧୁର ବାଣୀ ଶୁଣିବ। ପୁଣି ବୋଲିବ ଏମନ୍ତ କୋଦ୍ଧବ, ମୋତେ ଦେଖିଲେ ଏ ବନକୁ ଯିବ । ସୁଖ ଯିବ ଜାଣ, କେହ ଜାଣୁଁ କହ୍ଣ ଖାଇବ ହସ । ୩୧ ।

ସେମ ସେମକେ ରୂପ ତାର ଶୋଭା, ହୋଇବ ଏ ତ ଜବେଣ ବଲ୍ଲଭା । ପଞ୍ଚ ହୋଇଛି ଅଙ୍ଗୁଳି ନଜର, ମଣ୍ଡିତ ଏ ତ ସ୍ୱଜା ଅନ୍ତଃପୁର । ଏ ଉତ୍ତିତନଦ୍ଧୀ, ଲକ୍ଷଣ ନ ହୋଇଲେ ସଂଶୟୀ ।୩୨।

× × ×

# ରୂପ ମାଧୁରୀ

## (ସୀତାଙ୍କ ରୂପ ବର୍ଣ୍ଣନା)

**[ ରାଜା ଧନଞ୍ଜୟ ଭଞ୍ଜ —ରଘୁନାଥବିଳାସ (ଅପ୍ରକାଶିତ) ]**

ଧନ୍ୟ ରମଣୀ କୁଟିଳ ବେଣୀ କନ୍ଦେ ଭ୍ରମରଶ୍ରେଣୀ,
କି ଅବା କାମଦେବର ରମ୍ୟ ନୀଳ କେତନ ଜାଣି ।
କି ଅବା ମୁଖଚନ୍ଦ୍ରକୁ ଗ୍ରାସି ରହନ୍ତି ଘୋର ତମ,
ସେଷେଣ ପୁଚ୍ଛ ଲମ୍ବାଇଅଛନ୍ତି ଦଶଇ ଅନୁପମ ।
କି ଅବା ନଜ ମ୍ରତ ଆଶାରେ ଅଛନ୍ତି ରଜନୀ ରହି,
ତାରକା ସପତ୍ନୀର ମାଣେ ନ ଯିବ ନଣାସାଇଁ ।
କି ଅବା ଯୁବାନେଶ ଗୃତକ-ଅମୃତଦାନୀ ସେତୁ,
କି ଅବା ଯୁବାଜନ ନୟନ କାମ ଶମର ଏନ୍ତୁ ।
କି ଅବା ରତିନାଥ-ରଥର ନୀଳ ଚାମର ଶୋଭା,
ଦେଖିଲେ ହରେ ହୃଦର ଧୃତି ଜଗତଜନଲୋଭା ।
କି ସେ କାଳନ୍ଦୀ ତରଙ୍ଗଶ୍ରେଣୀ ଶ୍ୟାମ୍ୟେକ ମନୋହର,
ସୀମାନ୍ତେ ଶୋଭ ସିନ୍ଦୂର ରକ୍ତପ୍ରଭା କି ପାଶେ ତାର ?
କିବା ଅଞ୍ଜନାଚଳୁ କନ୍ଦରୁଁ ଦର୍ଶ ବାହାର ରବି
କି ନୀଳମଣି ଭୂମିରେ ଶୋଭେ ମାଣିକ୍ୟଦଣ୍ଡ ଛବି ।
ଶିରେ ଶୋଭିତ ମାରଗ ମଣି ଉଦିତ ମାର୍ତ୍ତଣ୍ଡ
କି ନୀଳ ଧନୁପରେ ଯୋଜନ୍ତି ମଦନ ଫୁଲକାଣ୍ଡ ।
ନୀଳ କୁଟିଳ ଚୂର୍ଣ୍ଣ କୁନ୍ତଳ ତଥିପାରଶ୍ୱେ ସାଜେ,
କି ଭୃଙ୍ଗଗଣ କାମକୋଦଣ୍ଡ ଜଗତଜୟୁ ସଜେ ।

ତବା ଲଲାଟପଟ ସୁନ୍ଦର ଅଷ୍ଟମୀ କଳାନିଧି
ଭ୍ରୂଲତା ଅର୍ଦ୍ଧଚନ୍ଦ୍ରଙ୍କ ଶୋଭା ରଚି ଗ୍ରଢ଼ିଲା ବଧି ।
କପୋଳ ଫାଳ ଅତି ମଞ୍ଜୁଳ କି କାମଦେବ ଫଶ
ତବା ମୁକୁରଖଣ୍ଡ ମଜନ ଥୋଇଲା ଲୋକକାଶ ।

× × × ×

# ବସନ୍ତ-ବିଳାସ

## [ ନିଶଙ୍କରାୟ୍ ରାଣୀ—ପଦ୍ମାବତୀ ଅଭିଳାଷ (ଅପ୍ରକାଶିତ) ]

କୁସୁମ ସମୟ        ହୋଇଛି ଉଦୟ
ପଲ୍ଲବିତ ତରୁ ଲତା
ବୃକ୍ଷଡାଳେ ଡାଳ        ଲଗିଣ ଚହଲ
ଦିଶ୍ରି କି ବର ବନିତା । ୧ ।
ସର୍ବ ତରୁଗଣେ        ନବପାଣିପଣେ
କରନ୍ତି ଦିଶ୍ରି ସମ୍ଭାର,
ବର କନ୍ୟାଙ୍କୁ କି        ପତ୍ରରୁକ ଦେବେ
ବଢ଼ାଇ ଅଞ୍ଜନ୍ତ କର । ୨ ।
ଫଳ ପୁଷ୍ପ ଭରା        ତରୁଲତାମାନେ
ଦଶନ୍ତି ଏ ଅଧାହାର
ବନ୍ଧୁଗଣ ଲଭି        ଫୁଲ ବେଶ ହୋଇ
ବେଦୀରେ ସୋମନ୍ତ ବର । ୩ ।
ପଲ୍ଲବ ଲତା        ପଲ୍ଲବ ଦୂର କରି
ସ୍ୱେଷ୍ଟ ହୋଉଛି ସୁବେଶ,
ହୋମ ଅନଳ        ଜଳିବା ପ୍ରାୟ ଦିଶେ
ବର କନ୍ୟାଙ୍କର ପାଶ । ୪ ।
ପୁଷ୍ପମଧ୍ୟ ବନ୍ଦ        ଘୃତଧାରା ସେହୁ
ଛଯୋଗୀ ସେ କାଷ୍ଠରାଶି,
କାମ ବ୍ରାହ୍ମଣ        ଫୁଲଶରେ ଛେଦଣ
ହୋମ କରୁଛି କି ବସି । ୫ ।

କେଉଁ ତରୁଗଣ ଲତା ବେଷ୍ଟି ତେଣ
ଦିଶେ ଏହ୍ନ ଶୋଭାବନ,
ତର ପରବାସ ତେଜି କି ସ୍ୱରୂପ
ଭାନ୍ତି ଅଙ୍ଗେ ଆଲିଙ୍ଗନ । ୬ ।
ଦରବିକାଶ କୁସୁମ କଳା ମଞ୍ଜ
ହାସେ ମନ ମୋହୁଅଛୁ,
ମୁଞ୍ଚି ମକରନ୍ଦ ଛଳେ ରଖି ବୃନ୍ଦ
ସୁମା କି ଅଶ୍ରୁ ତେଜୁଛୁ । ୭ ।
ହଇ ଡାଳରୁ ଝଡ଼ି ପୁଷ୍ପ ପାଖୁଡ଼ା
କୁସୁମ ବରଷା ପ୍ରାୟେ,
ପବନ ବଳେ ବଲ୍ଲୀଗଣ ଚଳ
ମଲ୍ଲ ତାଳିନ୍ତି କିଏ । ୮ ।
କଳଧ ପକ୍ଷୀ — କୋଲାହଳ ନାଦରେ
କୁଳକୁଳ କିଏ ମଣି,
ନାନା ମୃଗଗଣ ଆଚଳାତି ପୁଣ
ଚରନ୍ତି ଲୋକ ଏ ଜାଣି । ୯ ।

× × ×

# ସୁଖ-ଧାମ

## [ରାଜା ରଘୁନାଥ ହରିଚନ୍ଦନ—ଶକୁନ୍ତଳାବିଳାସ,୪ର୍ଥ ଛାନ୍ଦ]

### ( ଅପ୍ରକାଶିତ )

ରାଗ—ମଙ୍ଗଳ ଗୁର୍ଜରୀ

ଏଥୁ ଅନନ୍ତରେ ଆସି ଶରଦ ପ୍ରବେଶ,
ନିର୍ମଳ ଜଳଦେ ସୁପ୍ରସନ୍ନ ଦଶଦିଶ ହେ । ୧ ।
ଖଣ୍ଡ ମଣ୍ଡନ ପାଣ୍ଡର ଉଜ୍ଜ୍ୱଳ ହୋଇଲେ
ଗଗନକୁ ଘୋଡ଼ାଇବା ଦଣ୍ଡକୁ ପାଇଲେ ହେ । ୨ ।
ବାହିତ ଜନଙ୍କୁ ଯେହୁ କରଇ ଅପାର,
ପାଙ୍କେ ଏମନ୍ତ ଅପାର ହୁଅଇ ତାହାର ହେ । ୩ ।
କୋକିଳକୁ ଖେଦାଇ ଯେ ଥିଲେ ଭେକୀ ବଂଶ
ତାହାଙ୍କୁ ଦଣ୍ଡ ହରଷ ରବ କଳହଂସ ହେ । ୪ ।
ଏମନ୍ତ ପ୍ରକାର ଜାଣି ଅବନୀତଳକ
ଶରଦ ମେଘ ଶ୍ରେଣିକ କଲାକ ଆଲୋକ ହେ । ୫ ।
ବର୍ଷାରନ୍ଧ୍ର ପ୍ରବେଶ ତ ହୋଇଲା ଶରଦ
ତେଣୁ କର ପ୍ରକାଶିଲା କୁମୁଦ କୁମୁଦ ଯେ । ୬ ।
ମଙ୍ଗଳମଣ୍ଡଳୀ ଆସି ମେଦନୀ ପ୍ରବେଶ
ଜଳଦାନ ବର୍ଷିବେ ପ୍ରଘଟ ଘନଘୋଷ ହେ । ୭ ।
ଏତେ ବୋଲି ନୟନରୁ ଧାର ପକାଇଲା
ମନ ମୂର୍ଚ୍ଛା ଯାଇ ପୁଣି ଏମନ୍ତ ବୋଇଲା ଯେ । ୮ ।
ହାହା ମୋ ପ୍ରାଣବାନ୍ଧବୀ ପ୍ରିୟା ଶକୁନ୍ତଳା,
ଅଦ୍ୟାପି ନୟନେ ଏ ବରଷା ଋତୁ ଗଲା ଯେ । ୯ ।

ଏମନ୍ତ ଶରଦ ପୁଣି ନୟନେ ଦେଖିବ,
ଜାଣି ତ ନ ପାରି କାହିଁ ଯିବେ ବନ ନେବ ହେ । ୧୦ ।
ତାହା ବନ ନେବା କଥା କରୁଛି ବିଚାର,
ତାହା ତନୁ ଧନମାନ ଯାଉଅଛି ମୋର ଯେ । ୧୧ ।
ପ୍ରେମକଳା ଶକୁନ୍ତଳା ବିନୁ ଏହୁ ଜୀବ
ମୁଁ ବୋଲଇ ମୋହ ଅଙ୍ଗେ କ୍ଷଣେହେଁ ନ ଥିବ ହେ ।୧୨।
ଏବେ ମାସ ମାସ ହୋଇ ସୁଖେ ଅଛି ରହ,
ମାସହିଁ କ ଏକା ସେ ବରଷା ମେଘ ଗୃହିଁ ହେ । ୧୩ ।
ସେ ଉତ୍ତାରୁ ପୁଣ ଏ ଶରଦ ଶୀତକର
ଗୃହିଁ ହି ଜୀବନ ପଣ ରହିଥିବ ମୋର ହେ । ୧୪ ।
ପ୍ରିୟା ଶକୁନ୍ତଳା ତୋତେ କୋଳରେ ବସାଇ
ଶୀତକର ଗୃହିଁ ଯେ ପ୍ରାଙ୍ଗଣେ ବସିଥାଇ ଯେ । ୧୫ ।
ଏବେ ସେ ପ୍ରାଙ୍ଗଣେ ଗୋ ଉଇଁବେ ସୁଧାନିଧି
କେମନ୍ତ କରି ସହିବୁ ରସିକଜଳଧି ଗୋ । ୧୬ ।
ପ୍ରାଙ୍ଗଣରେ ଚନ୍ଦ୍ରାତପ ଉଚ୍ଚ କରଥିବେ
ସଖୀମାନେ ଶୀତକରୁ ଦେଖାଇ ନ ଦେବେ ଯେ । ୧୭ ।
ହିମସରବ ବିଗ୍ରହକୁ ପୋଷିବେ ଶୃଙ୍ଖଳ
ଘନ ଗର୍ଜନକୁ ମୋହ ହୋଇବ ମଙ୍ଗଳ ଯେ । ୧୮ ।
ଏ ସଙ୍କାଶୁଁ ହେଉଅଛି ଏତେ କାର୍ଯ୍ୟ ମୋର,
ଆଜ ମୁହି ଚଳିବି ଶରଦ ଶୀତକର ଯେ । ୧୯ ।
ତୋହ ଆନନକୁ ଗୃହିଁ ନ ଦେଖଇ ଶଶୀ
ବଳିବ ତୋ ବିନୁ ଆଜ ସୁକୁଟିଲକେଶୀ ଗୋ । ୨୦ ।
ଶଶାଙ୍କ ଭୂଷଣ ନିଶା ଅଭୂଷଣ ହୋଇ
ଅବଶରେ ଥିବ ଶୋଇ ହରଷ ନ ମୁହିଁ ଯେ । ୨୧ ।

ଏମନ୍ତ ବସ୍ତୁରୁଁ ଆସି ରଜଣୀ ହୋଇଲା,
ଅମୃତଦୀଧିତି ପୂର୍ବ ଦଗକୁ ଦଶିଲା ସେ । ୨୨ ।
ଅନାଇ ହା ଚନ୍ଦ୍ରାନନେ ବୋଲି ମୋହ ଗଲା
ବନଦେବୀ ମୁଖେ ଜଳ ସିଞ୍ଚି ଉଠାଁଇଲେ ସେ । ୨୩ ।
ଶୁଣିହୁଁ ଚନ୍ଦ୍ରମା ଗୃହୁଁ ଲଭିଲା ଆଶ୍ୱାସ
ଧୁଉଛି ଏ ଶଶୀ ଶକୁନ୍ତଳା ମୁଖ ଲେଶ ସେ । ୨୪ ।
ରଘୁନାଥ ସୁରବର ଏହା ଶୁଣି ହସେ
ନଜ ପ୍ରିୟା ମୁଖଚନ୍ଦ୍ର ନେହେ ଆସି ଦେଖେ ସେ । ୨୫ ।
ସ୍ତୁତ ନାମ ସୁଖଧାମ ଷଟ୍‌ବିଂଶ ପଦ
ଚତୁର୍ଥେ କହିଲି ଆସି ହୋଇଲା ଶରଦ ସେ । ୨୬ ।

× × × ×

# ଋତୁରାଜ

## ( ଉପେନ୍ଦ୍ର ଭଞ୍ଜ—କୋଟିବ୍ରହ୍ମାଣ୍ଡସୁନ୍ଦରୀ, ୬ଷ୍ଠ ଛାନ୍ଦ )

### ରାଗ—ବସନ୍ତ

ଅତି ରସମୟ, ବସନ୍ତ ସମୟ, କଲେ ପ୍ରମେୟ ତାହାର
ମିତ୍ର ଅନଙ୍ଗଙ୍କୁ, ପ୍ରବଳ କରାଇ, ଆଚର ଚର୍ଚ୍ଚାରେ ବିହାର
ଆଗତେ ଆସ୍ୱେଦିଲା ନାଗେଶ୍ୱରକୁ
ଋତୁରାଜ ପଦ୍ମେ ସେ ରଜ ଯେଣିକି ଗୃହେଁ ପ୍ରଫୁଲ୍ଲ କେଶରକୁ । ୧ ।
ଭୂତ ପଦ ସୂତ ଆବରଣ ମଧ୍ୟେ ସାଧ୍ୱୀଗୁଣ ଯେବେ ପଶିଲା
ନବ ପୁଷ୍ପବତୀ ସେବତୀ ସଙ୍ଗତେ ରହି କ୍ରୀଡ଼ାକୁ ପ୍ରକାଶିଲା
ମନୋଜ ଶରପୁର ମଧ୍ୟ ଚତ୍ୱରେ,
ଉଦିତ କରାଇ ରକ୍ତ ଅନୁରାଗ ଅଧର ସେ ଖେଳେ ସହରେ । ୨ ।
ମଧୁ ବନ୍ଧୁ ପଣେ ମଳୟ-ଶଇଳ-ନିଳୟ ଅନିଳ ବହିଲା
ସଲିଳେ ମଜ୍ଜି ପଦ୍ମ ଗୃହ ଜାତ ଦକ୍ଷିଣ ସ୍ୱଭାବେ ମୋହିଲା
ତା ଜାଣି ବନ-ଭବନେ ଯେ ଆବେଶ,
ତରୁଲତା ଶ୍ରେଣୀ ତରୁଣୀ ତରୁଣୀ ସମସ୍ତ ସୁମନ ସୁବେଶ । ୩ ।
ଶୋଭା କରଣାର ରସାଳ ପୁନ୍ନାଗ ପୂଗ ମଗ୍ନ ସେ ଅଭିଳାଷେ
ପୁନାଗ ମାଧବୀ ମଲ୍ଲିକା ସେବତୀ ଚମ୍ପା ନାମା ବହୁ ଉଲ୍ଲାସେ
ଏ ଭାବେ ବହୁଳ ସଘାତ ହୋଇଲେ,
ସହଚରୀ ଦାସୀ ଆସି ଚହ୍ନି ମିଶି ଉନ୍ନତ ପ୍ରଭା ଦେଖାଇଲେ ।୪।
କଳୀ-ନଳୀ-କୋଷ-ମୁଠା ଫୁଟ କରି ପଲ୍ଲବ କର ପ୍ରସାରିଲେ
ମକରନ୍ଦ ଗନ୍ଧ-ପିଚକା ପରାଗ ଫଗୁ ଅବସରେ ଖେଳିଲେ
ହେଲେ ଯେ ଆରକ୍ତ-ଶରୀରେ ଝଲତ
କଲେ ଖଞ୍ଜନ-ରଞ୍ଜନ-ଈକ୍ଷଣକୁ କ୍ଷଣକୁ କ୍ଷଣ ଚଞ୍ଚଳତ । ୫ ।

ବର୍ଣ୍ଣି ଅବ୍ୟକ୍ତରୁ ହାରିତ କନକ-କଙ୍କଣ ନିଃସ୍ୱନେ ଦଶିଲେ
ମତ୍ତ ଭୃଙ୍ଗଶ୍ରେଣୀ ବାଜଣୀ କିଙ୍କିଣୀ ରଣ ରଣ ପଦ ଘୋଷିଲେ
        ଏତକ ମାତ୍ର ରହସ୍ୟ ବିବେଚନା,
ପିକ କୁହୁ କୁହୁ ଲୋକ ହୁଁ ହୁଁ ହୁଁ ହୁଁ କଲେ ଉଚ୍ଚ ବଚ ରଚନା ।
ବିକାଶ ହୋଇଲେ କି ଶୁକ ସାଧୁ ଯେ ପୂର୍ବ ବିଭୂତିକି ଚେତିଲେ
ଛୁରିକ କୁସୁମ କାଷ୍ଠ-କଠୋରଙ୍କ ଉତ୍ଫୁଲ୍ଲ ପୁଲକ ଭଜିଲେ
        ତା' ଦେଖି ଯାକ ହୃଷ୍ଟ ପୁଷ୍ଟ ଲଭିଲେ,
ଉଡ଼ୁ ପଡ଼ିଲ ବସନ୍ତମାନରଜ ବଶେ କେତେ ଅଙ୍ଗ ଶୋଭିଲେ ।୭।
ନବମାଲିକା ନବବାଳିକା ଏକା ବର୍ଣ୍ଣଭେଦ ଅଛି ମାତର
ବାମା ହୁଅଇ ତପସ୍ୟେ ବୋଲନ୍ତେ ବାସ ଆଶ୍ରୟ ନବଲ୍ଲର
        ମୁକୁଳବନ୍ତ ଭାବ ଯେଣୁ ଗ୍ରଥିତ
ଖେଳି ଉଦ୍ୟମରେ ଧବସ୍ୱାମୀପରେ ଶୁକ-ବାକ୍ୟେ ଗୃହୁଁ ବିହିତ ।୮।
ସେ ଭଙ୍ଗବଶ ଯେ ହୋଇଲେ ଅଶୋକ ସ୍ତବକ-ଉରଜ ଦଶାଇ,
'ନଭ-ସ୍ଥିତ ଛତ୍ର ସେ ଲୀଳା ରହସ୍ୟ ଚରିତେ ହରିତ ରସାଇ
        ସାରଥି ରଥୀ ମାନସ ଚଳାଇଲେ,
ପ୍ରାତଃ ଦିବସାନ୍ତ ଅରୁଣ କରଇ ଦୁହେଁ ଅରୁଣ ବୋଲାଇଲେ ।୯।
ସ୍ନେହ ପୂର୍ଣ୍ଣିରେ ଚନ୍ଦ୍ର ଚନ୍ଦ୍ର-ଚୂର୍ଣ୍ଣିରେ ଖେଳିଲେ ତାରଳୀ ସଙ୍ଗତେ
ନ ଯାମା ସମା ଶ୍ୟାମା ଅତିଶୟରେ କସ୍ତୂରିକା ଦଳ ସିଙ୍ଗନ୍ତେ
        ସେ ଧୂଳି ସେଇ ଲେଉଟାଇ ମାଇଲେ,
ନିଃଶଙ୍କେ ଚନ୍ଦ୍ରିକା ଅଙ୍କ କରି ଅଙ୍କେ ଲୀଳା ବିଳାସେ ଥୋଇଲେ ।
ମଳୟ ଯେ ଗନ୍ଧମାଦନ କାନନ ଉଦରେ ଚତୁରଆନନ
ଗୁଣବିଶାରଦା ସାରଦା ସାବିତ୍ରୀ ସଙ୍ଗେ ରଙ୍ଗେ ତୋଷ ଜନକ
        ଶ୍ରୀଖଣ୍ଡ-ଅଚଳେ ଆଖଣ୍ଡଳ ଚଳେ,
ଯେନ ଇନ୍ଦ୍ରାଣୀ ଗନ୍ଧର୍ବ ଅପସରୀ ସେ ଉତ୍ସବେ ମତ୍ତ ଚମ୍ପକେ ।୧୧।

କନ୍ନଶ୍ରୀ କନ୍ନର ଯେବନ ଧନେଶ୍ୱର ଚଇତ୍ର ରଥରେ ଧଳସେ
ନକ୍ଷତ୍ରମାନଙ୍କେ ଉମାଧବ ମାଧବ ପ୍ରତିମା ରୂପରେ ଲୋଳ ସେ
ବିମାନ ଆରୋହି ସେ ରଙ୍ଗେ ଭ୍ରମିତ,
ସେ ବିଳାସ କଇଳାସ ବଇକୁଣ୍ଠେ ହୋଇଥିବ ଶତ ରମିତ ।୧୨।
ମୋହି ପାରଇ ଜଗତ ଯେଉଁ ଗୀତ ଆଲିଙ୍ଗିତ ସ୍ୱର ସପତ
ସ୍ତବକ ଲୋକତ ପଦ୍ମରେ ପନ୍ନଗ ଅନଙ୍ଗ ଚନ୍ଦ୍ରିତ ରୂପତ
ବିହଗ ପଶୁ ସ୍ପର୍ଶରେ ସ୍ୱରେ ଧଇଲେ,
ସୁଣଶ୍ରୁ କରି ବସନ୍ତ ରାଗ ଧରି ସର୍ବ ଲୋକେ ତାହା ଗାଇଲେ ।୧୩।
ସେ କର୍ଣ୍ଣକୁହରେ ପ୍ରବେଶେ ବହିବେ ଅନ୍ତରତେ ରହି ହୃଦରେ
କଲେ ଉଦ୍ଦୀପନ ଆଲମ୍ବନ ଅବଲମ୍ବନ ସେ ଅତି ଆଦରେ
ସମ୍ଭୋଗ ବିପ୍ରଲମ୍ଭ ବେନି ଶୃଙ୍ଗାର,
ଯୋଗୀ ବିଯୋଗୀ ଶବରତନ କରନ୍ତି ଭାବ ବେଗେ କେଳି ଆଦର ॥
ସର୍ବରେ ହୁଅଇ ଇନ୍ଧନ ଚନ୍ଦନ ବନ୍ଦନ ତାପ ବିନାଶରେ
ଲେଖ ଲେଖନ୍ତି ସ୍ୱର୍ଗ ଭୋଗ ମଧ୍ୟରେ ଅତ୍ୟନ୍ତ ସୁଖ ମାନସରେ
କୁମର-ବର ଏ ଋତୁ ଉପଗତେ
ଅନୁପମ ଆସ୍ୱମକୁ ଗମେ ବେନି ମିଶ ଶଢ଼ ପୁଂସ ସଙ୍ଗତେ ।୧୫।

× × × ×

## ଉପବନ-ବିହାର

### ( ଉପେନ୍ଦ୍ର ଭଞ୍ଜ—ଲାବଣ୍ୟବତୀ, ୫ମ ଛାନ୍ଦ )

#### ସ୍ୱର—ରସକୁଲ୍ୟା

ଏହି ସମୟରେ, ସୁନ୍ଦରୀ ସମ୍ମୁଖରେ ସ୍ୱପ୍ନମଞ୍ଜରୀ ଜଣାଇଲା
ଅତି ମଧୁର ମଧୁରିକୁ ପ୍ରବେଶ କରନ୍ତୁ ଦଳ ହେଲା ହୋଇଲା
ଶ୍ରବଣ, କର ନାହିଁ ନବ କାମିନୀ,
ପକ ବଚନେ ପୁନଃ ପୁନଃ ପ୍ରକାଶ କଲାଣି ଅନ୍ଧାର ଯାମିନୀ । ୧ ।
ମଳୟ ଶିଖରୀ ଶିଖ ଶ୍ରେଣିର କରି ବହିଲାଣି ମନ୍ଦ ସମୀର
ସୁମନାକୁ ବାସ ଗ୍ରହିଲି ନେବନ୍ତି ବୋଲି କହିଲାଣି ଭ୍ରମର
କେଶର, କେଶରେ ହେଲାଣି ମଞ୍ଜୁଳ
କେଶରେ ମଣ୍ଡନ କରିବା ଇଚ୍ଛାରେ ଫୁଟିଲେଣି କେତେ ବଞ୍ଜୁଳ ।୨।
ମଲ୍ଲୀ ମାଧବୀ ମକରନ୍ଦ ସାଧରୀ ହେଲେଣି ବାନ୍ଧବୀ କାନନେ
କୁଷାର କାଶ କୁନ୍ଦ ହାସ ପ୍ରକାଶ କଲେଣି ପଙ୍କଜ-ଆନନେ
ହେଲାଣି ଚର୍ଚ୍ଚରୀ ପ୍ରକଟ କଣ୍ଟକେ
ଅତନୁ ଫୁଲର ବିଶିଖ କାମୁକ ଯୋଡ଼ ତଲାଣି କାମୁକେ । ୩ ।
ଦୋଳା ଖେଳା ସରିଗଲାଣି ହରିବ ଶରୀର ହେଲାଣି ସ୍ୱେଦକୁ
ଚନ୍ଦନ କର୍ପୂର ସୁଧା ଲେପପୁର ବ୍ୟଞ୍ଜନ ବଢ଼ାଇ ମୁଦକୁ
ଚତୁରୀ, ଜାଣି ନ ଥିବୁ ତୁ କପାଇଁ,
ଅଭି ଅଭିରାମ ଆରାମ ଦେଖିବା ବଚନେ କରିବାକୁ ଜଣାଇ । ୪ ।
ସଜନୀ ବଚନ ଜାଣି ଶୀଉକାର ମାର୍ଗ ପରିଷ୍କାର ବଚନେ
ଅମଳ କମଳ କୋମଳ ଚରଣ ପୀଡ଼ା ନୋହିବାକୁ ପାଞ୍ଚିଲେ
ପଦ୍ମିନୀରେ, ଗନ୍ଧସାର ଗୋଳ ସିଞ୍ଚିଲେ
ଯୁବତୀ ସେବତୀ ପାଖୁଡ଼ା ମିଶାଇ ଘନସାର ତହିଁ ବିଞ୍ଚିଲେ । ୫ ।

ହୀର ପରଖ ଚଞ୍ଚଣା ପାନସୁଣା ସଜଣି ସଜାଉଥିଲେ ତହିଁ,
ମନ୍ଦିନନ୍ଦନା ଜଗତବନ୍ଦନାଙ୍କୁ କରଭର ଦେଇ ଉଠାଇ,
ସୁନୟନା, ସୃଷ୍ଟି ସାର ସାରଙ୍ଗମାଣି
ହସ୍ତର ଶ୍ୱେତ ଆତପତ୍ର ଟେକିଲେ ଗ୍ରୀଷ୍ମର ଗ୍ଲାନି ପ୍ରଶ୍ମର । ୬ ।
କେଉଁ ପ୍ରବୀଣା ବୀଣାକୁ ବଜାଉଛନ୍ତି ଯାନ୍ତ୍ରିକ ପ୍ରୀତ ହେଉଛି,
ବନ୍ଧୁରେ ବନ୍ଦର ବାଜୁଛି ଏଥିରେ ସାବଧାନ ଥାଉ କହୁଛି,
ଗମନେ, କେମାଁର ମୁଁ ମନେ କରଇ,
ମନମଥ ରଥଯାତ୍ରା କି କରୁଛି ପଥ ମନୋରଥ ପୂରାଇ । ୭ ।
ଲଲାଟ ଲପନ ଗନ୍ଧ ଦର୍ପଣ ଶକୁର ଶ୍ୟାମର ଯହିଁରେ,
ତରଙ୍ଗ କୁରଙ୍ଗନୟନ କୁରଙ୍ଗ କି ରଙ୍ଗ କରଇ ତହିଁରେ,
କଳଶ, ତଟ କୁଚ ଶ୍ରେଣୀ ଚଞ୍ଚଳ,
କଟୀମେଖଳା ଘଣ୍ଟି ଯହିଁ ପ୍ରକଟି ଅଞ୍ଚଳ ପତାକା ଚଞ୍ଚଳ । ୮ ।
ଶୋଭା ଏ ବାଧିରେ ପ୍ରବେଶ ସଖୀରେ ପୀନସ୍ତନୀଏ ବିପିନରେ
ବୁଲିବା ଖେଳିବା କୁସୁମ ତୋଳିବା ଆରମ୍ଭିଲେ ତୋଷ ମନରେ,
ତହିଁରେ, ଛଳ ଭକ୍ତିମାନ କହିଲେ,
ଶୁଣି ଷଡରକ୍ତ ଚକିତ ସ୍ତବକ ମୁଦ୍ର ଷଡ଼ଭୂତିକ ବହିଲେ । ୯ ।
କହେ ଏକ ନାରୀ ହଣେଶେ ସୁନାରୀ ଏ ଦେଶରେ ବାସ କରନ୍ତି,
ଶୁଣ କିଂପୁରୁଷ ଚଞ୍ଚଳ ମାନସ ଏଥି ତଥି ପୁଣ ଯାଉଛି,
ତାହାଙ୍କ, ଛଳ କହିଲା କେଉଁ ସ୍ତ୍ରୀରୁ
ମହାବିବେକୀ ହୋଇ ବୁଝ କପାଇଁ ମଧୁର ନାମକୁ ବିସ୍ମରୁ । ୧୦ ।
ଏକକୁ ରହିଁ ଆରେକ ସଖୀ କହେ ନିକଟେ ନାଗେଶ୍ୱର ମୋର,
ବୋଇଲ ହୋଇଥାଇଛି ନାଗେଶ୍ୱର ସୁପର୍ଣ୍ଣିବେ କର ଆଦର,
ସେ ଛଳେ, ଚହିଲା ନାଗେଶ୍ୱର କହି,
ସୁନ୍ଦରୀଭୂଷଣ ଦର୍ଶନ ପାଇବ ତା ପରେ ଯାଇଣ ଆସୋର । ୧୧ ।

କେ ଜାହାକୁ କହେ ମୋହଠାଇଁ ସଖି ରଖିଥିବୁ ଏକା କରୁଣା,
ଦେବବଲ୍ଲଭକୁ ଲଭିବାକୁ ତୋତେ, ବିଧାତା କଲାଣି ଫୁରୁଣା,
ସେ ଶୁଣି, ବୋଇଲା ଏ କଥା ଗୁଡ଼ରେ,
ଖୋଜିଲେ ନ ପାଇ ମୁଁ ବନ୍ଧୁ ଜୀବକୁ ପଡ଼ିଲି ବସନ୍ତ ଦାଉରେ ।୧୨।
କେହେ ବୃନ୍ତସ୍ୱରେ କହେ ସନ୍ତପ୍ତ ମୁଖକୁ ତାହାର ଅନାଇଁ
ବଣ କରବୀରର ହୋଇଲା ଉତ୍ତରେ ମଳି ମଳି ହେଉ କପାଇଁ
ସେ ବୋଲେ, ଭଙ୍ଗିରେ ଅଳକ ଚେତାଇ,
ଝିଆଳୀ ହେଲାଣି ଦେଖିଲି ଉତ୍ତରୁ ପଳାଶ ପାଶେ ସା ଗମଇଁ ।୧୩।
କେ କହେ ଅଶୋକ ଲଭିଲି ସୁନ୍ଦରୀ କେତକୀ ନହୁଲାଟି ମୋହର,
ସେ କହେ ସୁବର୍ଣ୍ଣକାନ୍ତ ହର ସେହି ଯୋଡ଼ାଇ ଦିବୁଟି ଶରୀର ;
ଏକାଳେ ଆଉ ଜଣେ ଛଳ ପ୍ରସ୍ତର,
ଦେଖାଇ ତରୁ ଚୁମ୍ବିଅନା ଯାଣକୁ ଯିବ କି ନ ଯିବ ପସ୍ତର ।୧୪।
କିଦଖରେ ରସାଳ-ବିଟପୀ ପ୍ରବାଳ ବକୁଳମାଳାରେ ଶୋହୁଛି,
ଶୋଭାବନପ୍ରିୟ ଅବଲମ୍ବ ଥିଲେ ବନ୍ଧୁତ ଲୋଲମ୍ବ ମୋହୁଛି,
ଏମନ୍ତ, ଭାବ ମନେ କରୁ ବିଳାସ,
ଯୌବନ ଚଞ୍ଚଳ ବଧି ସନ୍ତପ୍ତ, ପରଗୁରୁକାଏ ପ୍ରବେଶ ।୧୫।
ଦେଖି ହରଷ ଦୃଷ୍ଟି ପାତେ ସାରଏଜାତ ଗନ୍ଧରସ ପଣ୍ଡିତା,
କମଳାକ୍ଷୀ ଜମ ଚଉତନା ଯେନ କାଞ୍ଚଳରେ ହେଲା ଶୋଭିତା,
ବାନ୍ଧିଲା, ଭଉଁ ମଧ୍ୟେ ଶାଢ଼ୀ ପଣନ୍ତ,
ଫଗୁମୂଣା ଖୋସି ହସିବାର ଗୃହଁ ସଖୀଏ ସାଜିଲେ ଧୂରତ ।୧୬।
ଭମର ମଉକାଣିଶୀ ସଙ୍ଗେ ରଙ୍ଗେ ତରଙ୍ଗେ ଖେଳିଲେ କାମିନୀ
ମଣ୍ଟି ଆକାଶେ ଏକ ବେଳେ ପ୍ରକାଶେ କି ଅବା ଅନେକ ଦାମିନୀ
କି ଅବା, ଚଳ ପୁଷ୍ପ ଲତା ହେମର,
ମହା ଅନୁରାଗ ପରାଗ ବୃଷ୍ଟିରେ ହୋଇଅଛନ୍ତି ତତପର ।୧୭।

ଚନ୍ଦନ ଖଞ୍ଜନଗଞ୍ଜନନେତ୍ରୀଙ୍କ କେଉଁ ପୁତାଇ ପୁଛାଉଛି,
ଯାଉ ଅସାଧ୍ୟ ହୋଇ କେଉଁ ସୃଷ୍ଟିକି ରହିଛି ମନରେ ଧ୍ୟାଉଛି,
ନାହିଁ କି, ଏତେକ ବଚନ ତାହାର
କୋଟିଏ ବ୍ରହ୍ମାଣ୍ଡ କୋଟିଏ ଭଙ୍ଗୀରେ ଜଣେମା ଯୁମାନ ଯାହାର ।୧୮।
ମୁଠାକୁ ଫିଟିଯିବାରେ ଏ ପ୍ରଖର ଫଗୁ ଖେଳିବାରେ ଲଳନା
ବସନ୍ତସଖା ତଣକୁ କି କରନ୍ତି ରଙ୍ଗପାଟ ଚେଲ ଗୁଳନା
ସେ ରଜ, ଯାଉଁ ଶୂନ୍ୟେ ଚୂର୍ଣ୍ଣ ହୋଇଲା,
ଅତ୍ୟନ୍ତ ଚୂର୍ଣ୍ଣିତ ଦଗପରିବାର ମାଣିକ୍ୟତ୍ୱ କି ଧଇଲା । ୧୯ ।
କଙ୍କଣ କ୍ୱଣିତ ଧ୍ୱନିରୁ ମଣିତ ଭୁଜ ଊର୍ମ୍ମି କି ବାଇଲା,
ଜୁଇବାତ ବାଣୀ ମଙ୍ଗଳଗୀତ କି ଅଭିଷେକ ବେଳ ହୋଇଲା,
ସ୍ୱଭାବେ କୁଚପୂର୍ଣ୍ଣକୁମ୍ଭ ସଜଛି,
ଶୁକୁ ରେଖ ଚୂତପଲ୍ଲବ ସଂଯୁତ ହାର ଉପହାର ପାଜଛି । ୨୦ ।
ରମଣୀ ରମଣୀୟ ତଳେ ଅଧର ଚୁଣ୍ଡରେ ସେ ବନ ସରଣୀ
ମଲ୍ଲୀମଣ୍ଡଳୀ ରକ୍ତକାଳି ଲଭିଲା ଏପରି ମାନସକୁ ଆଣି,
ସେ ଧୂଳି, କାହିଁ ପବନଯୋଗେ ଉଡ଼ି,
ଶୁଭସୂଚକ କହି ଜଉତଷ କି ଯାଉଛି ଶିରେ ବାନ୍ଧି ଶାନ୍ତି । ୨୧ ।
ପଙ୍ଗର ନୀରେ ଯନ୍ତ୍ରବରେ ପିଚକା ଖେଳନ୍ତେ ନୀରବୁନ୍ଦଦୁଣା
ମଞ୍ଜୁ ମଞ୍ଜୀର ଘନରବ ମଧୁର ବସନ୍ତେ କରେ କି ବରଷା,
ବଜୁଲୀ, ପରୁ ଫୁଲ ଭୂଷାରତନ,
ଅଙ୍ଗସଙ୍ଗେ ଅଛ ଭୃଙ୍ଗ ଉଡ଼ିପଡ଼େ ହୋଏ କି କରଜା ପତନ । ୨୨ ।
କୁଙ୍କୁମ ପିଚକା ବାଜ ଜରଜର ସୁନ୍ଦର ଉରଜ କାହାର,
କନକାଚଳରୁ କବା ଦ୍ରବତାଲ ପ୍ରବାହ ହେଉଛି ବାହାର,
କର୍ପୂର ଚୂର୍ଣ୍ଣି ମଣ୍ଡିତ କାହା ସ୍ତନ,
ସୁମେରୁ-ସ୍ୱୟମ୍ଭୁ ଶମ୍ଭୁସୂଚଲ କି ହୋଇଲେ ଭସ୍ମ ଲେପନ । ୨୩ ।

କାହା କୁଚ ଫଗୁ ସଙ୍ଗରୁ ସୁପକ୍ୱ ଏହି ପାଞ୍ଚ ହୁଏ ମାନସେ,
ହୃଦୟ ସରୋବର ମଧ୍ୟେ ଉଦୟେ କୋକନଦକଳି ଯୁଗ୍ମ ସେ,
କାହାର, ଛିଣ୍ଡି ହାର ଖସେ ମୁକୁତା,
ପୟୋଧର ଛଳେ କ୍ଷୀରବିନ୍ଦୁ ବୃଷ୍ଟି କରିବାରେ କି ସେ ଶୋଭିତା ॥
କାଶ୍ମୀର ରଜ କେ ମାରନ୍ତେ ପାଇଛି ଗ୍ରୀବା ବଙ୍କ କରି ସୁହଁସି,
ମନ୍ଦ ମରୁତେ କି ଉଲଟି ନଳିନ ଅଳି ସଂଯୁକ୍ତରେ ରହିଲି
ଚକ୍ଷୁ କାହା, ମୁଖେ କସ୍ତୁରୀ ପଙ୍କ ଢାଳି,
ମୃଗାଙ୍କ କଳଙ୍କ ଛଡ଼ାଇ ଦେବାକୁ ବହିଯାଉଛି କିବା କାଳୀ । ୨୫ ।

କାହା ଲଲାଟୁଁ ସିନ୍ଦୂର ବହିପଡ଼େ ସ୍ୱେଦ ବହିବାରୁ ଜନିତ,
କେଶସ୍ତୂପ ଦନ୍ତପାତରୁ ବ୍ୟକତ ଇନ୍ଦୁ ଦେହରୁ କି ରକତ,
ସେକାଳେ, ଅତି ଚଞ୍ଚଳ ନେତ୍ର ଗତ,
ବଗଧରକୁ କି ଶ୍ୟାମଳ କୋମଳ କମଳେ ମଣ୍ଡନ୍ତି ଯୁବତ । ୨୬ ।
ବହୁକରଣେ ଭାନୁ ପ୍ରଭା ପ୍ରକାଶ ଶ୍ରବଣେ ତାଙ୍କ ଚଳନ୍ତି,
ପ୍ରମଦା ପ୍ରମୋଦଭରେ କି କରନ୍ତି ଅନଙ୍ଗ ମଙ୍ଗଳଆରତି,
ଚଳତ, ନାସିକା ମୋତି ଉରହାର,
ବାଦେ ନୂପୁର ନାଦେ କି ନାଚୁଛନ୍ତି ନର୍ତ୍ତକୀ ଗୁଣେ ଅହଂକାର । ୨୭ ।
କେଉଁ ଲତାରୁ କୁସୁମ ଖସିବାରୁ ଏମନ୍ତ ହେଉଛି ପରତେ
ଧନ୍ୟ ଧନ୍ୟ ବୋଲି ପ୍ରଶଂସା କରି କି ରହି ବର୍ଷୁଛନ୍ତି ନିରତେ
ପରାଗ, ଛଳେ ସଞ୍ଚୁଛନ୍ତି କର୍ପୂର,
ପଲ୍ଲବ ଛଳେ ପଣନ୍ତେ ବର୍ଷୁଛନ୍ତି ଉପକାର କୁତେ ତାଙ୍କର । ୨୮ ।
କେଉଁ କେଉଁ ତରୁ ତରୁଣୀମାନଙ୍କୁ ପକ୍ଷିନିନାଦରେ କହନ୍ତି,
ଏପରି ଉପଦ୍ରବ କେବେ ନୋହିଥିଲି ଦେଖି ନ ଥିତ ସୁରପତି,
କେ ତରୁ, ଶାଖା ଲୋଟନ୍ତି ଫଳଭରେ,
କି ପରିରମ୍ଭ ଆରମ୍ଭ କରୁଛନ୍ତି ବକ୍ଷୋରୁ ପାଦ ଲାଗୁ ଶିରେ । ୨୯ ।

× × ×

ପଚନ୍ଦେଶ

(ଅଭିମନ୍ୟୁ ସାମନ୍ତସିଂହାର—ବିଦଗ୍‌ଧଚିନ୍ତାମଣି)

ରାଗ—ସାରଙ୍ଗ

(୭୪-ଛାନ୍ଦ)

ଦୂତି କର ଧରି ହରି ବୋଇଲେ କଣେଶ
ମିଳ ପୂଜ ଆସିଥିଲା ଗଲା ତ ପାଶୋର,
ଦୂତଗୋ, କହବୁ ବନ୍ଧୁଙ୍କୁ,
କ ଦୋଷରେ ଫିଙ୍ଗିଦେଲା ମଦନ-ସନ୍ଧକୁ । ୧ ।
କଣି ପୁଣି ଗୁଣମଣି କଲା ତ କଗଣ
ଏ ଭବ ଭାବନା ହିନା ଦେଉଛି ଗରାସ,
ଦୂତ ଗୋ, କହବୁ ଧଣାକ,
ପରଜନ ଷାନ ହେଲେ କାହାକୁ ହାନ କ । ୨ ।
ରସାଲୟା ଆଶା ଧରି ରହୁଛି ମୋ ଜୀବ
ତୃଷ୍ଣାଗୋଷ୍ଠ ଅନୁକମ୍ପା ନ ପାଇଲେ ଯିବ,
ଦୂତ ଗୋ, କହବୁ ଗୋସ୍ୱାଙ୍କ,
ଦାସ ଦୋଷୀ ହେଲେ ଏତେ ସରକ ଝାରକ । ୩ ।
ବାଳକ କାଳରୁ କାଳେ ହେଲା ଅନୁସର
ଲଗାଣ ହାତରେ ଆସେ ଯାଉଅଛି ସର,
ଦୂତ ଗୋ, କହବୁ ଯୋଷାକୁ,
କାହିଁ ପାଇଁ ଭସାଇଲା ଉଗାର ହଯାକୁ । ୪ ।
ସାଜବନେ ବନେ ବନେ ଧୂଳି ଖେଳବା ରେ
ଏ ମୋ ଭାଗ ବୋଲି ସ୍ୱମଲତା ଏ ବେଶରେ

ଦୂତ ଗୋ, କହିବୁ ଧୀରକୁ,
ମହତ ଉତ୍ସବ ବେଳେ ପାଷାଣ ଗାତକୁ । ୫ ।
କୁମାର କୁମାରୀ ବେଳେ ଖେଳବା ସନ୍ଧିରେ
ବର ମୁହିଁ କନ୍ୟା ସେହି ହୋଇଛୁ ସନ୍ଧିରେ,
ଦୂତ ଗୋ, କହିବୁ ସହିକ,
ସେ ଦିନର ସନମାନ ମନରେ ନାହିଁ କି । ୬ ।
କଧୂଳି ସୁମନ ବୋଲେ ଲେଖାଇ ଯାବକ
ସେହି ଦିନୁ କରିଅଛୁ ଶ୍ରୀପଦ-ସେବକ
ଦୂତ ଗୋ, କହିବୁ ବାଳୀକି,
ଛଡ଼ାଇଲେ ଛାଡ଼ିବ କି ମୋହର ଅଳକ । ୭ ।
ଥାଙ୍କୁ ଅବଜ୍ଞା ଦିନେ କରି ନାହିଁ ମୁହିଁ,
ଆଣି ଦେଉଥାଏ ଯାହା ମାଗେ ଗୃହମୁଷୀ
ଦୂତ ଗୋ, କହିବୁ ସଖୀକି,
ଏଥର ଥରେ ମନେ ନ କଲ୍ଲ ତ ଦୁଃଖୀକି । ୮ ।
ପଛ ଜଟି ଯାଇଥିଲ ଧୂଳି ଲପନରେ
ଲୁଛି ଧୋଇ ବୋଲି ପୋଛିଦେଲି ବସନରେ
ଦୂତ ଗୋ, କହିବୁ ରାଧାକୁ,
କପର ପାଶୋରି ଦେଲ ଛେଳିଏ ଶରଧାକୁ । ୯ ।
ଏହି କୃପା କରିଥିବଟିକି ବଡ଼ଦିନେ
ଯତ୍ନବନ୍ତେ ଆଖି ଥନ ଥନ ଜଲ୍ଲ ଦିନେ,
ଦୂତ ଗୋ, କହିବୁଟି ତାକୁ,
ଏବେ ତ ଉପାଡ଼ି ଅଛୁ ପୀରତିଲତାକୁ । ୧୦ ।
ଶ୍ରୀପଦେ ନୂପୁର ଦିନେ ଖଞ୍ଜିବାରେ ମୁହିଁ
ନାହିଁ ନାହିଁ କଲ ଆନ ପକାଇ ଘୁମୁଷୀଁ

ଦୂତ ଗୋ, କହିବୁ ପ୍ରିୟାକୁ,
ବାଳକାନ୍ତି ଉପାଙ୍ଗ କ ପୀରତ-ସୁଆଁକୁ । ୧୧ ।
ଘଳାମ୍ବୁଜ ଯେବ ବୃନ୍ତୁଁ ଥାଇ ମୋ ଆନନ
ପୁଲକ ପଲ୍ଲବ ଶୋଭା ମାନେ ସହନନ
ଦୂତ ଗୋ, କହିବୁ ଏତିକ,
ଏବେ କାହିଁ ଶଙ୍କା କଲ ନିଷ୍ଠୁର ଘାତକ । ୧୨ ।
କୃପାନ୍ତ ହୃଦରୁ ଜାତ ହେଲା ପରବତ
କାହିଁ କ ନୋହିବ ନିଷ୍ଠୁରତା ପରବତ
ଦୂତ ଗୋ, କହିବୁଟି ଥରେ,
ସ୍ଥାଣେଶକା ପ୍ରାଣ ବସି ଅଚଳ ପଥରେ । ୧୩ ।
ନ ଥିଲି ପଥିକ ହୋଇ ବଦେହ ପଥରେ,
ଏବେ ଚାହାଂଶନ୍ତ ବାରେ ଚନୁମାକେ ଥରେ,
ଦୂତ ଗୋ, କହ ସୁଗତିକ,
ଶ୍ରୀମୁଖରେ ଅଞ୍ଜ ହେଉ ଏବେ ମୋ ଗତିକ । ୧୪ ।
ଜନ୍ମାନ୍ତର କଥା ପର ନ ଥିଲା ମନରେ
ଯେଉଁ ଦିନୁଁ ନାମ ଶୁଣି ପଡ଼ିଲା କର୍ଣ୍ଣରେ
ଦୂତ ଗୋ, କହିବୁଟି ବାରେ,
ଜାତିସ୍ମର ସ୍ଫୂର୍ତ୍ତି ଏବେ ହେଲା ଚେତନାରେ । ୧୫ ।
ଗୋସ୍ୱେଚନା ଏତା କାନ୍ତ ସ୍ନେହରେ ଆଦରେ
ପାଦପଦ୍ମ ବୋଲି ସଦା ଭୂଷଣ ହୃଦରେ
ଦୂତ ଗୋ, କହ ସୁହାସୀକି,
ତା ନାମ ଗାଆନ୍ତ ସ୍ନେହେ ରସିକ୍ତ ବଂଶୀକି । ୧୬ ।
ସ୍ୱପ୍ନେ ଭେଟାଇଲ ଦିନୁ ସେ ଦମ୍ପତିଙ୍କୁ
ମୁକୁନ୍ଦ ନୋହୁନ୍ତ ଦନସଙ୍ଗ ପସରାକୁ

ଦୂତ ଗୋ, କହିବୁ ସ୍ୱାମୀକୁ
ଏମାନେ କି ସତମାନେ ଗଣିବେ ସ୍ୱାମୀକୁ । ୧୭ ।
କାହିଁକି ତପସ୍ୟା ଥିଲା କେଉଁ ଜନ୍ମାନ୍ତରେ
ଜାଗରେନ୍ଦ୍ର କଲା ମାଳା ଦେଇଛି ହୃଦରେ
ଦୂତ ଗୋ, କହିବୁ ସ୍ୱାଧାରେ,
ସେ କାଳରେ ପ୍ରେମାମୃତ ବୁହାଇଲା ଧାରେ । ୧୮ ।
ଆଶା-ପୋତ ମେଲିଥିଲି ପ୍ରଣୟ-ସାଗରେ
ଦୁର୍ଦ୍ଦୈବ-ବାତ ଯୋଗରେ ଭାଙ୍ଗିଲା ବେଗରେ
ଦୂତ ଗୋ, କହିବୁ ବାଳାକୁ,
କୃପା ଥିଲେ ତାକୁ ଦେଇ ରତ୍ନୋଜ୍ଜ୍ୱଳ-ବେଳାକୁ । ୧୯ ।
ବର୍ଷିଆ ମର୍ଯ୍ୟାଦା କି ବାଳା ଦେଇ ଜାଣିବାର
ହେଳା କଲେ ବାଳା ହେବ କାଣି ଝାସିବାର
ଦୂତ ଗୋ, କହ ପ୍ରାଣାକୁ,
ଜୀବନ ଜୀବନ ଯାଉଅଛି ଊଣାକୁ । ୨୦ ।

× × ×

## ଉଦ୍‌ବୋଧନ

( ବ୍ରଜନାଥ ବଡ଼ଜେନା—ସମରତରଙ୍ଗ, ୨ୟ ଛାନ୍ଦ )

*　　*　　*　　*

ଏହି ସମୟେ ଜଣାଏ ଗୁର,　　ହେ ମହାରାଜା ପ୍ରତାପୀ ଶୂର,
ତେମଣା ବାରୁ ପଡ଼ିଲେ ଭାର,　　ସୈନ୍ୟ ଅପାର ଯେ,
ମହିମା ବଶୁ ନାହିଁ ଧରଣୀ,　　ରହୁ ତ ନାହିଁ ପଥିର ପାଣି
ଦେଖି ମୁଁ ଆସୁଛି ଏହିକ୍ଷଣି,　　ଆଜରେ ମୋର ହେ,
ଘୁଣ ଘୁଣ କହନ୍ତି ଅନେକ ଲୋକ ଯେ,
ମହାରାଜା କଷ୍ଟେ ବୁଡ଼ିଲା ମୁଲକ ଯେ,
କେ ବୋଲେ କଷ୍ଟେ ଗଲାଇଁ ଧରା, କେ ବୋଲେ ରାଜା ଭେଟିବେ ପରା,
କେ ବୋଲେ କିଛି ଚନାହିବ ମରା, ପଡ଼ନ୍ତେ ଲୋକ ଯେ । ୧ ।
ଏମନ୍ତ ଶୁଣି ସେ ନୃପମଣି　　ଗୋପୁର ପରେ ଗୁହିଁ ତକ୍ଷଣି
ନ ଦଶେ ଗଜ ତୁରଙ୍ଗ ପୁଣି,　　କେ ପାରେ ଗଣି ହେ,
ଦେଖିଲା ଲୋକେ ହୋଇ କାତର, କେ ବୋଲେ ଯୋଡ଼ିଆସେ ସାଗର
ଲୋକ ଚଳନ୍ତେ ବୋଲନ୍ତି ଦେଖ, ତରଙ୍ଗ ପାଣି ଏ,
ଗଜମାନଙ୍କୁ ଏ ବୋଲନ୍ତି ମକର ଯେ
ଓଟ ନୁହନ୍ତି ବସୁଛନ୍ତି କୁମ୍ଭୀର ଯେ
ଯୋଡ଼ିବା ଅଶ୍ୱ ଗତକୁ ଗୁହିଁ　　ବୋଲନ୍ତି ମୀନ ଧାଆନ୍ତି ତେଇଁ
ଫେନ ପରାଏ ମଣନ୍ତି ତହିଁ,　　ଶ୍ୱେତ ଚାମର ଯେ । ୨ ।
ଉଡ଼ୁଛନ୍ତି ଯା ଧଣ୍ଡା ବୈରଖ,　　ପୁଣି ବୋଲନ୍ତି ମହିମା ଦେଖ
ଏ କେଉଁ କେଉଁ ଜନ୍ତୁମାନ, ଅସୁଛି ଉଠି ଯେ,
ତାଙ୍କ ଶଗଡ଼ ଚଳବା ଗୁହିଁ,　　ସୋଲପ ପଙ୍କ ମଣନ୍ତି ତହିଁ
କୁମ୍ଭମାନଙ୍କୁ ବୋଲନ୍ତି ଦେଖ,　　ବୋହିତ ଏହି ହେ,

ଗୁଣ୍ଡମାନଙ୍କୁ ସର୍ପ ପଣ୍ଡସ୍ତେ ମଣି ଯେ,
ଜନମାନଙ୍କୁ କ୍ଷୁଦ୍ର ମୀନରେ ଗଣି ଯେ,
ଙ୍କେ ବୋଲେ ଆହେ ହେଲ କ ବାଇ, ସାକ୍ଷାତେ ସିନ୍ଧୁ ଗର୍ଜି ଆସଇ
ସ୍ତ୍ରୁଅନ୍ତ କେତେ ନୃପତ, ସରକ ପୂଣି ହେ । ୩ ।
ଏମନ୍ତ ମହାପଙ୍କଜ ଗୃହଁ କାହା ଧଇର୍ଯ୍ୟ ରହଲା କାହିଁ
କେହ୍ଣ ବସିଲେ ବଷାଦ ହୋଇ, ମସ୍ତକ ସ୍ପୃହଁ ହେ,
କେ ଅବା କହିଁ ମନେ ବସ୍ତୁରେ ଅବଶ୍ୟହିଁ ତ ମରବା ଥରେ
କେବଲ ହସ୍ତ ପିଟିବା କାଳ ହେବ କ ନାହିଁ ହେ
କେହ୍ଣ ବୋଲଇ ମରବାର ପ୍ରମାଣ ଯେ
ଛୁଡ଼ଦେଲେ ବାଜବ ମୋର ଡଙ୍କୁଣ ଯେ,
କେ ବୋଲେ ଆଗୁଁ କହ କ ହେବ ଯାହା କରବେ ଏ ବଳଦେବ
ମନେ ହେଉଛୁ ଅଖଡ଼େ ଯିବ ,, ପସ୍ତ ପସ୍ତଣ ହେ । ୪ ।
'ଏମନ୍ତ ଶୁଣି ସେ ନୃପବର କେ ବନ୍ତ ଏ ଯେ ଘୋର ସାଗର
ପୂର୍ବି ଆସୁଛି କରୁ ବସ୍ତୁର କାହିଁ ଏକର ହେ,
...ଶରେ କର ପକାଇ କର କେ...ନ୍ତ ହେବ ମନ୍ଦର ଗିଉ
ମହି ଦେବ କ ମନେ ବସ୍ତୁ ର... ଲୁମ୍ଭ... ହେ,
ଏହୁ ସିନ୍ଧୁ ମନ୍ତ୍ରନ ... ଯେବେ ହେ,
କେତେ ଯଣ ରତନ ... କେତେ ହେ,
ଏକେବଳ ତୁମ୍ଭେ ସୁର ଅସୁର ପସ୍ତେ ମୋତେ ଆଶ୍ୱାସି ଧର
କାଲକାଳକୁ ଗଣତ ରହି— ଯିବ ଏ ଉବେ ହେ । ୫ ।
ଏମନ୍ତ ବୋଲି ଉଠନ୍ତେ ଫୂଲ ଫାଟିଗଲାଣି ଶ୍ରୀଅଙ୍ଗ ସ୍ୱେଲ
ବୋଇକ୍ଷ୍ଣ, କାଲ ବୁଝିବା ଚାଲ— ଚରଣ ସବୁ ଯେ,
ପ୍ରାଣକୁ ...ଶା ରଖୁଛୁ ଯେହ୍ଣ କହୁଛୁ ଏତେ ବେଳୁଁ ସେ ଯାଉ
ମରବା ଲୋକ ମୋ ପାଖେ ଥାଉ ଚେମଣା ବାବୁ ଏ,

ବୃଷ୍ଟ ଛିଣ୍ଡାନ୍ତି ଥାଇ, ଜଣକୁ ମୋଡ଼ ଯେ,
କାଲି ଅଛୁ ଏତକ ବେଳକୁ ପଡ଼ ଯେ,
କେ ଯାଡ଼ କେ କେ ମରଦ ଚନ୍ଦ୍ରା ଏହି ଠାବରେ ବୁଝିବା ମିନା,
ଘୁଡ଼ିବ ଲେଦା ଗୋବସ୍ତ ପସ ପାଞ୍ଚ ଉପାଡ଼ ଯେ । ୬ ।
ଶୁଣି ଏମନ୍ତ ବଚନ ଚହିଁ ଜଣେ ଜଣଙ୍କେ କର ପର୍ଚ୍ଚାଇ
ସହି ନ ପାରି ବୋଇଲେ କେହି ଶତ୍ରୁର ନାହିଁ ଯେ,
ଖାଉନ୍ଦ ବୋଲି ବୋଲନ୍ତ ଏହା କୋହିଲେ ଜନ ଗୁଆନ୍ଲା ସୁହା
କେବଳ ଗଣ୍ଡି ଦେଖିବ ମୁଣ୍ଡ ଦେଖିବ ନାହିଁ ଟେ
ଯୁଦ୍ଧ ଦେଖି ଏ ପାଡ଼ମାନଙ୍କୁ ଅରେ ହେ,
ଗଡ଼ ଭିତରେ କପାଁ ଲୁଚଛ ଡରେ ହେ
ଗଢ଼ିନ ମାରି ପଳେ ଯେସାଇଁ ଏ କଥା କେହୁ ପାରିବ ସହି
ରଙ୍ଗ ବଦନ ଅଙ୍ଗ ତାଙ୍କର କ୍ରୋଧରେ ଥର ହେ । ୭ ।
ଶୁଣି ଯାଜନ ନ... ବୋଇଲେ ଏବେ ହେଲା ଗୋଚର
ଏହା ଶୁଣିବା ... ସିନା କେବଳ ହେ
ପଇସା ଘଟେ ନାହିଁ ... ସେହି ତ ଦଣ୍ଡ ବ'ଶ ଭୁଜ । ୨
ନ ନେବେ ପୁଣି ଯୁଦ୍ଧ ... ହୋଇଲା ମୂଳ ଯେ,
ଆଜ୍ଞା କରି ... ପାଲଙ୍କିରେ ଯେ
ଯାଇ ପ୍ରବେଶ ... ମୁରୁଗ୍ ଦ୍ୱାରେ ଯେ
ପୂର୍ବରୁ ଜଗିଥିଲେ ତ ଲୋକ ଯେଉଁ ଠାବକୁ ଯେଉଁ ପାଇକ
ଖଞ୍ଜି ରଖିଲେ ଗଡ଼ନାୟକମାନଙ୍କ ଠାବରେ ଯେ । ୮ ।
କାହାକୁ ବୁହି ବୋଲନ୍ତ ବାପା ମୁଣ୍ଡ ଶୁଖାଇ ଦେଉଛୁ କପାଁ
ଦେବ ସମ୍ମୁଖ ଘୋଡ଼ା ଶିପେଷା ମୁକୁଟା ...ଲ ଯେ
କେତେବେଳକୁ ମରଦ ପଣ ଏହି ଠାବରେ ଦୁଇବା ଠାଣ
ଦେଖି ବସିଛୁ କେତେ କମାଣ ଜଜାଲ୍ ଜଳ ଯେ

ସରଦାର ସନ୍ଧ୍ୟରେ ଆସେ ...ପଡ଼ ଯେ
ମନ କଅଁଳ ହେଲା ପଥର ମଝି ଯେ
କି ଦନ ସ୍ୱତ ଆଠପ୍ରହର    ବାନ୍ଧି ରହିଲେ ନେ...
ମୀନକୁ ବକ ଝାକଲ ପର    ଜଗିଥାଆନ୍ତି ହେ ।

*    *

ସମାପ୍ତ

...କ ନବଜୀବନ ପ୍ରେସରେ ଶ୍ରୀ ଚନ୍ଦ୍ରମଣି ମିଶ୍ର ବି. ଏ. ଙ୍କ ଦ୍ୱାରା ...